# ହଂ କଂ ଅନୁଭୂତି -

ଲେଖକ :-
ଶ୍ରୀ କୁଞ୍ଜ ବହାରୀ ମେହେର
ବରପାଲି-୭୬୮୦୨୯
ଜି: ବରଗଡ

୧୯୯୪

ମୁଦ୍ରକ :-
ଶ୍ରୀ ଦଶରଥ ବାଗ
ଲକ୍ଷ୍ମୀ ପ୍ରିଣ୍ଟିଂ ପ୍ରେସ, ଅତାବିରା
ଅତାବିର-୭୬୮୦୨୭
ଜି; ବରଗଡ

ମୂଲ୍ୟ ଟ ୧୫-୦୦ ଙ୍କା (ପନ୍ଦର ଟଙ୍କା ମାତ୍ର)

## ॥ ଓଁ ସରସ୍ୱତ୍ୟୈ ନମଃ ॥

ଇଷ୍ଟ ବୃତ୍ତେ ଶିକ୍ଷା ବାଁଚେ   ଶରୀର ବାଁଚେ କର୍ମେ
ସଦାଚାରେ ସମାଜ ବାଁଚେ   ଜୀବନ ବାଁଚେ ଧର୍ମେ ।

(ସଂଗୃହୀତ)

ପରମ ପିତା ପରମେଶ୍ୱରଙ୍କର କରୁଣା ମାନବ ଜୀବନରେ କୌତୁହଳ ସୃଷ୍ଟି କରିଥାଏ । ମଣିଷ କେତେବେଳେ କେଉଁ ପରିସ୍ଥିତିରେ ପଡି କେଉଁ ମାର୍ଗକୁ ଗତି କରୁଥାଏ ତାହା ସେ ଜାଣିପାରିବା ସମ୍ଭବ ହୁଏ ନାହିଁ । କର୍ମ ବନ୍ଧନରେ ଫାଶି ହୋଇ ମାନବ ତାର ନିର୍ଦ୍ଧିଷ୍ଟ ହୋଇଥିବା ପରମାୟୁ ଭଗକୁ ଗତି କରୁଥାଏ ।

ସାତ୍ତ୍ୱିକ କର୍ମ, କର୍ମଦ୍ୱାରା ଆବୃତ୍ତ ହୋଇ ଜୀବନକୁ ମହତ କର୍ମରେ ଉତ୍ସର୍ଗ କରି ଆଗକୁ ଚାଲିବା ହିଁ ମାନବ ଜୀବନର ଲକ୍ଷ୍ୟ । ଆଗକୁ ଚାଲିବା ବିଷୟଟି ମଣିଷ ପାଇଁ ଖୁବ ମହତ୍ତ୍ୱପୂର୍ଣ୍ଣ । ମନ ଓ ଜୀବନକୁ ଉଚିତ ସତ୍ ପଥରେ ନିୟୋଜିତ କରି ଦୃଢତାର ଓ ନିଷ୍ଠାର ସହିତ ନୀତି ନିୟମ ଶିଷ୍ଟାଚାର ପାଳନ କରି ପରମେଶ୍ୱରଙ୍କ ଠାରେ ଗଭୀର ବିଶ୍ୱାସ ସ୍ଥାପନ ପୂର୍ବକ ନିଜ ଲକ୍ଷ୍ୟ ସ୍ଥଳ ପ୍ରତି ଅଗ୍ରସର ହେବା ମାନବର କର୍ତ୍ତବ୍ୟ ।

ଉକ୍ତ କର୍ତ୍ତବ୍ୟ କର୍ମ ସମାଜର ମଙ୍ଗଳ ତଥା ଉନ୍ନତି ସକାଶେ ତନମନ ଧନ ସଂଯୋଗ କରି ବ୍ରତୀ ହେଲେ ମଣିଷ ଜନ୍ମ ସାର୍ଥକ ଲାଭକରି ଧର୍ମ ସଙ୍ଗେ ସମ୍ପୃକ୍ତ ହୁଏ ।

ଏହି ଶାସ୍ତ୍ରୋକ୍ତ ମତକୁ ମୋର ସାଧାରଣ ଜ୍ଞାନଦ୍ୱାରା ଅନୁଭବ କରେ ।

ମୋ ମନରେ କେବେ ଭାବ ନଥିଲା କିମ୍ବା ସ୍ୱପ୍ନରେ ମଧ୍ୟ ଦେଖି ନ ଥିଲି ମୋ ଭଳି ଜଣେ ସାଧାରଣ ମାନବ ବିଦେଶକୁ ଯିବ ଓ ସେଠାରେ

ମୋର ହସ୍ତ ତନ୍ତ କଳା ଲକ୍ଷ ଲକ୍ଷ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବ, ସେ ଦେଶର ଲୋକଙ୍କ ସଙ୍ଗେ ସଦ୍‌ଭାବନାପନ୍ନ ହୋଇ ମିଳାମିଶି ସ୍ନେହ ଓ ଶ୍ରଦ୍ଧାରେ ସମ୍ମାନ ଦେବ ।

ଉକ୍ତ ସମ୍ବନ୍ଧରେ ବିଦେଶକୁ ଯାଇ ସେଠାରେ କିଛି କାଳ ଅତିବାହିତ କରି ଆସିଥିବାର ଘଟଣାବଳୀ ଏବଂ ସେଠାରେ ଯାହା ଦେଖିଅଛି ମୋ ଅନୁଭୂତି କିଞ୍ଚିତ ମାତ୍ର । ତାହା ସବୁ ବର୍ଣ୍ଣନା କରିବା ସହ ବିସ୍ତୃତ ଲେଖିବା ମୋ ପକ୍ଷରେ ସମ୍ଭବ ନୁହେଁ । ମୁଁ ଲେଖକ ନୁହେଁ କିମ୍ବା ବିଦ୍ୱାନ ନୁହେଁ । କେବଳ ହସ୍ତତନ୍ତ ଶିଳ୍ପକଳା ର ବୈଶିଷ୍ଟ୍ୟ ପ୍ରତିପାଦିତ କରି ପ୍ରଗତି ପଥକୁ ଯିବା ହେଉଛି ମୋର ଲକ୍ଷ୍ୟ । ତାକୁ କୌଳିକ ବୃତ୍ତି ହିସାବରେ ଗ୍ରହଣ କରି ପରିପୋଷିତ ହେବା ମୋର ଧର୍ମ ।

ବିଦେଶ ଭ୍ରମଣ କରିବା ଭଳି ମୋର ବିଦ୍ୟା ନାହିଁ, ବିଦେଶକୁ ଯିବା ପାଇଁ ମୋର ଅର୍ଥ ନାହିଁ ତଥା ବିଦେଶରେ ରହି ଖାଦ୍ୟ, ଜଳ, ବାୟୁର ପରିବର୍ତ୍ତନ ସହାଣେ ମୋର ସ୍ୱାସ୍ଥ୍ୟ ଅନୁକୂଳ ରହିବା ସମ୍ଭବପର ନୁହେଁ ।

ଏଣୁ ଅନୁଭବ କରେଁ ବିଧିର ବିଧାନ, ପରମେଶ୍ୱରଙ୍କ କରୁଣାରୁ ଏ ସମସ୍ତ ସମ୍ଭବ ହୋଇପାରିଛି । ବହୁ ଦିନ ତଳର ନିମ୍ନୋକ୍ତ ପଦ୍ୟର ଭାବ ମୋ ମନ ଭିତରେ ରଞ୍ଜିତ ହୋଇ ଯାଇଥିଲା ।

ଏ କେଉଁ ସାଧବ ଆଣିଲ ବିଭବ କେତେ ଦୂର ଦେଶୁ ଅଞ୍ଚଳରେ
ଦରିଆ ବୁକୁରେ ବୋଇତ ଭସାଇ ଯିବୁ ଆମେ ଦୂର ବିଦେଶରେ
ଏ ଦେଶ ଆକାଶୁ ଆକାଶ ବିମାନେ ଉଡ଼ି ବୁଲିଯିବୁ ଦେଶେ ଦେଶେ
ଜଗତର ଜନେ କରି ଆପଣାର ବାନ୍ଧିବୁ ସକଳ ସ୍ନେହ ପାଶେ ।

ଏ ପଦ୍ୟର ଭାବଧାରା ସିନା ମୋ ମନରେ ରହି ଯାଇଥିଲା କିନ୍ତୁ ସମ୍ପୂର୍ଣ୍ଣ ଅସମ୍ଭବ ବୋଲି ମୋର ଧାରଣା ଥିଲା । କିନ୍ତୁ ଭଗବାନଙ୍କ ଅପାର କରୁଣାରୁ ମୋର ଆମେରିକାର ଫିଲାଡେଲଫିଆ ତଥା ହଂକଂ ପରିଭ୍ରମଣରୁ ଏହାର ପ୍ରତ୍ୟକ୍ଷ ଅନୁଭୂତି ହୃଦୟଙ୍ଗମ କରି ପାରିଛି ।

କୁଞ୍ଜବିହାରୀ ମେହେର

# ॥ ମୁଖବନ୍ଧ ॥

ସମ୍ବଲପୁରୀ ବାନ୍ଧଶାଢ଼ୀର କଳା-ଶିଳ୍ପ ସୌନ୍ଦର୍ଯ୍ୟର ଗୌରବ ଆଜି ସମଗ୍ର ଦେଶର ସରହଦ ପାରହୋଇ ଆନ୍ତର୍ଜାତିକ ସ୍ତରରେ ସୁଦ୍ଧା ସ୍ୱୀକୃତି ଲାଭ କରିଛି । ଶାଢ଼ୀ ଦେହରେ ଏହି ଶିଳ୍ପର ଅପୂର୍ବ କଳା ପ୍ରଦର୍ଶନ ଓ ରଙ୍ଗର ସ୍ଥାୟୀତ୍ୱ ଆଜି ପ୍ରବାଦରେ ପରିଣତ ହେଲାଣି । ଦେଶ ବିଦେଶରେ ଏହି ଶାଢ଼ୀର ଅନନ୍ୟ କଳା ସୌନ୍ଦର୍ଯ୍ୟ ଜରିଆରେ ବାନ୍ଧକଳାର ଗୌରବ ବୃଦ୍ଧି କରିବାରେ ଯେଉଁ ଅଳ୍ପ କେତେ ଜଣ ଶିଳ୍ପୀ ସାଧନାରତ ସେମାନଙ୍କ ମଧ୍ୟରେ ବରପାଲି କଳାପ୍ରାଣ ଶ୍ରୀଯୁକ୍ତ କୁଞ୍ଜ ବିହାରୀ ମେହେର ଅନ୍ୟତମ । ବାନ୍ଧକଳା କ୍ଷେତ୍ରରେ ତାଙ୍କର ଅସାଧାରଣ କୁଶଳତା, ପ୍ରଖର ଅଥଚ କୋମଳ କଳ୍ପନା ଶକ୍ତିର ପ୍ରୟୋଗ, ନୂତନ ଡିଜାଇନର ଉଦ୍ଭାବନା ଓ ସର୍ବୋପରି ଏହାକୁ ଲୋକପ୍ରିୟ କରିବାରେ ତାଙ୍କର ଏକନିଷ୍ଠ ସାଧନା ଯୋଗୁଁ ତାଙ୍କୁ ଓଡ଼ିଶାର କଳା ଗୌରବ ବୋଲି କୁହାଯାଇପାରେ ।

ଶାଢ଼ୀରେ କେବଳ ଲତା, ଫୁଲ ଜମା ପ୍ରାକୃତିକ ଡିଜାଇନର ନୁହେଁ, ବିଭିନ୍ନ ଚିତ୍ର ଓ ବିଭିନ୍ନ ଭାଷା ଲିପିର ସୂକ୍ଷ୍ମ ବୟନ କଳା ଯେତେ ସୌନ୍ଦର୍ଯ୍ୟ ପୂର୍ଣ୍ଣ, ସେହି ପରିମାଣରେ ବିସ୍ମୟକର । ଅନେକ ସମୟରେ ଦର୍ଶକ ସ୍ତମ୍ଭୀଭୂତ ହୋଇ ରହିଯାଏ ସତରେ ସେ ଲୁଗା ବୁଣୁଛନ୍ତି ନା ସୂତା ଦେହରେ ଲେଖି ଯାଉଛନ୍ତି ଛନ୍ଦଭରା ପ୍ରାଣଛୁଆଁ କବିତାର କେତୋଟି ସାବଲୀଳ ପଂକ୍ତି । ନିର୍ଦ୍ଦିଷ୍ଟ ଭାବରେ ସେଇ ହାତ ବୁଣିଯାଏ କାର୍ପାସର ମହକଭରା କବିତା । କଳ୍ପନାସିକ୍ତ ହୃଦୟରୁ ଝରୁଥିବା ନୂଆ ନୂଆ ଡିଜାଇନର ଆବେଦନ ରୂପାୟିତ ହୋଇ ଉଠେ ତନ୍ତଶାଳର ସେଇ କାର୍ପାସର ଭୂଜପତ୍ର ଅଙ୍ଗରେ ।

ରାଷ୍ଟ୍ରୀୟ ପୁରସ୍କାରରେ ସମ୍ମାନିତ କୁଞ୍ଜବିହାରୀ ବାବୁଙ୍କ ପ୍ରଥମ ବିଦେଶଯାତ୍ରା ହୋଇଛି ଯୁକ୍ତରାଷ୍ଟ୍ର ଆମେରିକାର ଫିଲାଡେଲଫିଆ । ସେଠାରେ

ତିନିମାସ ରହଣୀର ଦୈନନ୍ଦିନ ଅନୁଭୂତିକୁ ସେ ଲିପିବଦ୍ଧ କରି ପ୍ରକାଶ କରିଥିଲେ 'ଆମେରିକା ଡାଏରୀ' ଭାବରେ । ଏହି ପୁସ୍ତକରେ ଦାର୍ଶନିକ ବା ଆଲୋଚକର ବିଶ୍ଳେଷଣାତ୍ମକ କିମ୍ବା ତୁଳନାତ୍ମକ ବିବରଣୀ ନାହିଁ, ସାହିତ୍ୟିକ ଦୃଷ୍ଟିରୁ ଭାଷାର ବର୍ଣ୍ଣବୈଚିତ୍ର୍ୟର ଯାଦୁକରୀ ସ୍ପର୍ଶ ନାହିଁ, ଅଛି ସୁଦୂର ବିଦେଶୀ ଭୂଇଁରେ ଭାରତୀୟ ଶିଳ୍ପ, କଳା ଓ ଶିଳ୍ପୀ ମାନଙ୍କ ପ୍ରତି ଅଶେଷ ଶ୍ରଦ୍ଧା ଓ ସମ୍ମାନର ହୃଦୟ ସ୍ପର୍ଶୀ ବର୍ଣ୍ଣନା । ସେଠାରେ ବସବାସ କରୁଥିବା ଭାରତୀୟ (ଏବଂ ବିଶେଷ କରି ଓଡ଼ିଆ) ମାନଙ୍କର ଆତିଥ୍ୟପରାୟଣତା ଓ ଆତ୍ମୀୟତା ବର୍ଣ୍ଣନା ସହ ଫିଲାଡେଲଫିଆର ନଦୀ, ପ୍ରକୃତ ଗଛ, ବରଫବର୍ଷା ଓ ଜନଜୀବନର ବର୍ଣ୍ଣନା ସବୁ ମନୋରମ ଭାବେ ଅନୁଭୂତ ହୁଏ ।

ଭାରତର ପ୍ରତିନିଧିତ୍ୱ କରି ତାଙ୍କର ହଂ କଂ ଯାତ୍ରାର ବିବରଣୀ ହେଉଛି 'ହଂ କଂ ଡାଏରୀ' । ବହିଟିର ଲେଖକ ହଂ କଂ ରେ ଅନୁଷ୍ଠିତ ଆନ୍ତର୍ଜାତିକ ପ୍ରଦର୍ଶନୀରେ ନିଜର ଅଭିଜ୍ଞ ଅନୁଭୂତି ସହ ବୟନ ଶିଳ୍ପର ସମ୍ଭାବନାର ସୂଚନା ଦେଇଛନ୍ତି । ତା ସହିତ ରହିଛି ସ୍ୱାର୍ଥାନ୍ୱେଷୀ ତଥା ପଣ୍ୟମୁଖୀ ବନ୍ଦର ନଗରୀ ହଂ କଂ ର ଆଧୁନିକ ଜୀବନ ଚର୍ଯ୍ୟାଭିତରେ ପ୍ରାଚୀନ ଐତିହ୍ୟ ସାଂସ୍କୃତିକ ବିଭବ, ଧାର୍ମିକ କଳା ଓ ସୌନ୍ଦର୍ଯ୍ୟ ବୋଧର ଅପୂର୍ବ ସମନ୍ୱୟର ସୂଚନା ।

ଅନ୍ୟାନ୍ୟ ଭାଷା ଅପେକ୍ଷା ଓଡ଼ିଆରେ ବିଦେଶ ଭ୍ରମଣ କାହାଣୀ ସେମିତି ବେଶୀ ନୁହେଁ । ଅନ୍ୟ ଦୃଷ୍ଟିରୁ ଦେଖିଲେ କୁଞ୍ଜ ବିହାରୀ ବାବୁ ସାହିତ୍ୟିକ ନୁହନ୍ତି । ଯାହା ଦେଖିଛନ୍ତି ଯାହା ଅନୁଭବ କରିଛନ୍ତି, ମଣିଷର ଚିରନ୍ତନ ସୃଷ୍ଟି ଜଗତ ଯାହା ତାଙ୍କ ପ୍ରାଣକୁ ସ୍ପର୍ଶ କରିଛି, ତାହାର ନିଛକ ବର୍ଣ୍ଣନା କରିଛନ୍ତି । ସେଇ ଦୃଷ୍ଟିରୁ ଏକ ସରଳ ପ୍ରାଣର ଅଭିବ୍ୟକ୍ତି ଲାଗି ଭ୍ରମଣ ସାହିତ୍ୟ ଭାବରେ ଓଡ଼ିଆ ସାହିତ୍ୟ ଜଗତରେ ତାଙ୍କର ଦୁଇଟି ବହି ନିଶ୍ଚିତ ଭାବରେ ଏକ ସ୍ମରଣୀୟ ଯୋଗଦାନ ।

**ନାରାୟଣ ପୁରୋହିତ**
ଅଧ୍ୟକ୍ଷ, ଜବାହାରଲାଲ କଲେଜ
ପାଟଣାଗଡ଼

# ।। ଅଭିମତ ।।

ବସ୍ତ୍ର କାରୁକାର୍ଯ୍ୟ ଫୂର୍ତ୍ତି ବୟନ ଓ ବାନ୍ଧ କଳାରେ ସମୃଦ୍ଧ ସମ୍ବଲପୁରୀ ବସ୍ତ୍ର ଆଜି ବିଶ୍ୱ ବଜାରରେ ଏକ ଆଲୋଡ଼ନ ସୃଷ୍ଟି କରିଛି । ସ୍ଥାୟୀ ରଙ୍ଗ ବିନ୍ୟାସ ଓ ସୂକ୍ଷ୍ମ କାରୁକାର୍ଯ୍ୟର ଚମତ୍କାରିତା ଆନ୍ତର୍ଜାତିକ ଅଦୃତ ଓ ସ୍ୱୀକୃତ ଲାଭ କରିଛି । ଏଥିପାଇଁ କୌଣସି ପ୍ରକାର ଶିକ୍ଷା ବା ପ୍ରଶିକ୍ଷଣ ବ୍ୟବସ୍ଥା ନଥିଲେ ମଧ୍ୟ କୁଶଳୀ କାରିଗର ଜଣେ ଏହାକୁ ମୌଳିକ ଓ ପାରବାରିକ ବୃତ୍ତି ଭାବରେ ଏହାର ଉତ୍କର୍ଷତା ପ୍ରତିପାଦନ କରି ଆସୁଛନ୍ତି କଠିନ ଶ୍ରମ ଓ ଅଧ୍ୟବସାୟ ବଳରେ ଏହି କଳାକୁ ଉତ୍ତରୋତ୍ତର ଉନ୍ନତି ପଥରେ ଆଗେଇ ଆଣୁଛନ୍ତି । ସେହିମାନଙ୍କ ପ୍ରଗାଢ଼ ନିଷ୍ଠା ଓ ଐକାନ୍ତିକ ଉଦ୍ୟମ ଫଳରେ ସମ୍ବଲପୁରୀ ବସ୍ତ୍ରର କଳାକୃତି ବିଶ୍ୱବିଖ୍ୟାତ ହୋଇ ପାରିଛି ସେମାନଙ୍କ ମଧ୍ୟରେ ଓଡ଼ିଶା ତଥା ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ବାନ୍ଧ କଳାର କୃତୀ କାରିଗର 'ଆମେରିକା ଡାଏରୀର ଲେଖକ ଶ୍ରୀ କୁଞ୍ଜ ବିହାରୀ ମେହେର ଅନ୍ୟତମ । ସେ ୧୯୮୯ ରେ ଭାରତ ବାହାରେ କେନ୍ଦ୍ର ସରକାରଙ୍କ ଆନୁକୂଲ୍ୟରେ ବସ୍ତ୍ରକଳା ପ୍ରଦର୍ଶନ ପାଇଁ ଶିକ୍ଷା ସଂସ୍କୃତି ତଥା ବ୍ୟବସାୟ ବାଣିଜ୍ୟର କେନ୍ଦ୍ର, ସ୍ଥଳୀ ସାଗର ଶୈଳ ହର୍ମ୍ୟ ଶୋଭିତ ସୌନ୍ଦର୍ଯ୍ୟମୟୀ ନଗରୀ ହଂ କଂ ଠାରେ ଅନୁଷ୍ଠିତ ପ୍ରଦର୍ଶନୀକୁ ପ୍ରେରିତ ହୋଇଥିଲେ । ଏହି "ହଂ କଂ ଅନୁଭୂତି" ପୁସ୍ତକଟି ତାଙ୍କ ବାସ୍ତବ ଅନୁଭୂତିର ଏକ ଦୃଷ୍ଟାନ୍ତ ମାତ୍ର ।

ଶ୍ରୀଯୁକ୍ତ ମେହେର ଏହି ପୁସ୍ତକରେ ତାଙ୍କ ହଂ କଂ ଯାତ୍ରା ତତ୍ରତ୍ୟ ରହଣି ଓ ଭାରତ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଯାହା ସବୁ ଦେଖିଛନ୍ତି ଓ କରିଛନ୍ତି ସେ ସବୁର ପ୍ରତ୍ୟକ୍ଷ ଅନୁଭୂତି ନିଜ ମୌଳିକତା ସହ ବର୍ଣ୍ଣନା କରିଛନ୍ତି । ଯାହା ପାଠ କଲେ ତାଙ୍କ ମୁଖରୁ ଶୁଣୁଥିଲା ପରି ଲାଗେ । ସେ

ସ୍ୱଚିନ୍ତନକୁ ସ୍ୱଲିଖନରେ ପ୍ରକାଶ କରିଛନ୍ତି । ଏହାଦ୍ୱାରା ତାଙ୍କ ମନୋଜ୍ଞତାର ମୌଳିକତା ଫୁଟି ଉଠିଛି । ସେ ତ ଜଣେ ସାର୍ଥକ ଶିଳ୍ପୀ, ବାନ୍ଧକଳାରେ ତାଙ୍କ ମନୋଜ୍ଞତା ଫୁଟାଇଲା ଭଳି ।

ତାଙ୍କ ଲେଖାରେ ଅନେକ ତଥ୍ୟର ଅବତାରଣା କରିଛନ୍ତି । ସେଥି ମଧ୍ୟରୁ ତାଙ୍କର ଈଶ୍ୱର ପରାୟଣତା, କଳା କୁଶଳତା, ଦେଶ ପ୍ରେମିକତା, ପ୍ରଧାନ । ସ୍ୱଦେଶକୁ ମାତୃଭୂମି ମାଆରୂପେ ଓ ଦଂକଂକୁ ମାଉସୀ ରୂପେ ଚିତ୍ରଣ କରି ମାତୃଭକ୍ତିର ପରାକାଷ୍ଠା ଦେଖାଇଛନ୍ତି । ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପରେ ମାଆ ମାଉସୀଙ୍କ ମିଳନ ପ୍ରସଙ୍ଗ ତାଙ୍କ ସ୍ୱଦେଶ ପ୍ରୀତିର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ତାଙ୍କ ଏହି ପୁସ୍ତକରେ ପ୍ରସଙ୍ଗ କ୍ରମେ କେତେ ତଥ୍ୟର ଆଲୋଚନା କରିଛନ୍ତି ଯାହାକି ପାଠକ ପାଠିକାଙ୍କ ମନକୁ ଆକର୍ଷଣ କରୁଛି ଏବଂ ଆମୂଳ ଚୂଳ ପଢ଼ିବାକୁ ଇଚ୍ଛା ହେଉଛି ।

ଅଭାଦର
୧୫ । ୮ । ୯୪

**ଗୋବିନ୍ଦ ଦାସ**
ଜାତୀୟ ପୁରସ୍କାର ପ୍ରାପ୍ତ ଶିକ୍ଷକ

# ॥ ମୁଖବନ୍ଧ ॥

"ସୁଜାତ ଉତ୍ତମା ପ୍ରୀତି" ମାତର ଅନୁରୂପ ପରି ଏ ମୁଖବନ୍ଧ ମୁଁ ଲେଖୁନାହିଁ । ଶ୍ରୀଯୁକ୍ତ କୁଞ୍ଜ ବିହାରୀ ମେହେର ମହାଶୟ ଏବଂ ଏ ପୁସ୍ତକ ବିଷୟରେ ମୁଁ ଯେତିକି ଜାଣେ ତାହା ଲେଖିଲି ।

ହସ୍ତତନ୍ତ ଶିଳ୍ପ ଆବହମାନ କାଳରୁ ଅଛି ଓ ରହିବ । ଏ ଶିଳ୍ପ ଅଗାଧ ସମୁଦ୍ର ପରି । ସାଗର ଜଳରୁ ଉପଳ ଖଣ୍ଡ ସଂଗ୍ରହ କରିବା ପରି ଯେଉଁ ଶିଳ୍ପୀ ଯେତେ ଗୋଟାଇ ପାରେ ସେ ହସ୍ତତନ୍ତ ଶିଳ୍ପ କଳାକୁ ସେତେ ସମୃଦ୍ଧ କରିପାରେ । ଏଥିରେ ଦ୍ୱିମତ ନାହିଁ । ଅନେକ ଧୁରନ୍ଧର ଶିଳ୍ପୀ ମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ କୁଞ୍ଜ ବିହାରୀ ବାବୁ ଜଣେ । ପିଲା ବେଳରୁ ସେ ଜଣେ ସୁଦକ୍ଷ ବାନ୍ଧ ଶିଳ୍ପୀ ଅଟନ୍ତି । ଏହି ମହାଶୟ ନମ୍ର, ସଚ୍ଚୋଟ, ସୁଶୀଳ, ଚରିତ୍ରର ଲୋକ । ବହୁ ଦୁଃଖ କଷ୍ଟ, ଘାତ ପ୍ରତିଘାତ ସ୍ୱୀକାର କରି ସେ ଆଜି ଉପରକୁ ଉଠିଛନ୍ତି । ଗୁଣ ଚିହ୍ନେ ଗୁଣିଆ ପରି ଦେଶ ବିଦେଶର ସରକାର ତାଙ୍କୁ ସମ୍ମାନିତ କରିଛନ୍ତି ।

ଏହି ମହାଶୟ ଆମେରିକା ଓ ହଂକଂ ଆଦି ବିଦେଶର ପ୍ରଦର୍ଶନୀରେ ଯୋଗଦେଇ ଉତ୍କଳ ତଥା ଭାରତ ବର୍ଷର ତନ୍ତଶିଳ୍ପ କଳାର ଗୌରବ ବୃଦ୍ଧି କରିଥିବାରୁ ତାଙ୍କଠାରେ ମୁଁ କୃତଜ୍ଞତା ଜ୍ଞାପନ କରୁଅଛି ।

ଶ୍ରୀଯୁକ୍ତ କୁଞ୍ଜ ବାବୁ ଜଣେ ସୁସାହିତ୍ୟିକ ନହେଲେ ବି ତାଙ୍କ ରଚିତ "ହଂ କଂ ଅନୁଭୂତି" ରୁ ଆମ୍ଭେ ଯେଉଁ ମାନେ ହଂ କଂ ଦେଖିବାର ସୁଯୋଗରୁ ବଞ୍ଚିତ ଅନ୍ତତଃ ଭାବ ଅହରଣ କରି ସାଗର ବକ୍ଷର ସୌନ୍ଦର୍ଯ୍ୟ ମୟୀ ହଂ କଂ ନଗରୀ ବିଷୟରେ କିଛିଟା ଧାରଣା କରି ପାରିବ ।

ଗତ ତା ୯ ନଭେମ୍ବର ୧୯୮୯ ଏନ ହଂ କଂ ନଗରରେ ଅନୁଷ୍ଠିତ ହୋଇଥିବା ପ୍ରଦର୍ଶନୀ ଗୃହକୁ ମହାରାଣୀ ଏଲିଜାବେଥ ଉଦଘାଟନ କରିଥିଲେ ଓ କୁଞ୍ଜ ବାବୁଙ୍କ ଷ୍ଟଲରେ ପ୍ରଥମେ ପଦାର୍ପଣକରି ତାଙ୍କ ହସ୍ତତନ୍ତ ବୁଣା "ପ୍ରଗତି ରତ୍ନ" ଶାଢୀର ଚମତ୍କାରିତା ଦେଖି ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ପ୍ରଗତିରତ୍ନ ଶାଢୀ ସହ ଅନ୍ୟ ଏକ ଶାଢୀର ଉଚିତ ମୂଲ୍ୟ(ହଂକଂ ଚେକ) ଦେଇ କିଣି ନେଇଥିଲେ ।

ପରିଶେଷରେ ମନ୍ତବ୍ୟ ଏହି ଯେ ଚଳନ୍ତି ପୁସ୍ତକଟି ଉଦାର ପାଠକ ମାନେ ଭ୍ରମଣ କାହାଣୀ ରୂପରେ ଗ୍ରହଣ କରିବେ ବୋଲି ଆଶା ।

ଆନନ୍ଦ ମେହେର
ପି. ୪ ଦେବାଧି ମେହେର
ପ୍ରତିଷ୍ଠାତା ଉତ୍କଳ ବସ୍ତ୍ରାଳୟ, ବରପାଲି

## ବରପାଲିରୁ ହଂ କଂ ଯାତ୍ରା ଆରମ୍ଭ :-

୧୯୮୯ ଇ: ଅକ୍ଟୋବର ୧୮ ତାରିଖ ବୁଧବାର ଦିନ, ସମୟ ଘ: ୧୧'୧୫ ମିନିଟ ସମୟ ଦିଲ୍ଲୀର ନ୍ୟାସନାଲ ହେଣ୍ଡିକ୍ରାଫ୍ଟ୍ସ୍ ଓ ହେଣ୍ଡଲୁମ୍ ମ୍ୟୁଜିୟମ ଠାରୁ ଗୋଟିଏ ଜରୁରୀ ଚିଠି ଆସିଲା । ସେ ଚିଠି ପଢ଼ି ଅତ୍ୟନ୍ତ ବ୍ୟସ୍ତବ୍ୟସ୍ତ ହୋଇପଡ଼ିଲି । ସେ ଚିଠିର ଅର୍ଥ ଥିଲା ତୁମେ ଅତି ଜରୁରୀ ମନେକରି ଆସନ୍ତା ତା ୨୨ । ୧୦ । ୧୯୮୯ ର ଦିନ ଏଠାକୁ ପହଞ୍ଚ । ତୁମେ ସଙ୍ଗରେ ଆଣିଥିବ ହସ୍ତତନ୍ତ ମଙ୍ଗା ତଥା ବୁଣା ସରଞ୍ଜାମ ଏବଂ ବୁଣା ହୋଇଥିବା ଶାଢ଼ୀ, ସୁତା, ଥାନ, ମଠାର ଓ ଅନ୍ୟାନ୍ୟ ନମୁନା ଗୁଡ଼ିକର ସଙ୍ଗେ ବନ୍ଧନ କପଡ଼ା । ତୁମର ପୂର୍ବରୁ ହୋଇଥିବା ପାସ୍‌ପୋର୍ଟ ମଧ୍ୟ ଆଣିଥିବ । ଏଠାରେ ଭିସା ମିଳିବ । ହଂ କଂ ଦେଶରେ ଏକ ପ୍ରଦର୍ଶନୀ ହେଉଅଛି । ଆମ ଭାରତ ବର୍ଷ ତରଫରୁ ସେଠାରେ ହସ୍ତତନ୍ତ ଶିଳ୍ପ କଳା ତୁମର ପ୍ରଦର୍ଶିତ କରିବାକୁ ହେବ ।

ସେ ଅବସରରେ କ୍ଷେତ୍ର ମୋହନ ମେହେର ମଧ୍ୟ ଦିଲ୍ଲୀଠାରୁ ଆଣି ଥିବା ଚିଠି ଖଣ୍ଡିଏ ମୋତେ ଦେଇଥାନ୍ତି ।

ପରିବାରର ସମସ୍ତଙ୍କ ମନ ଅଥୟ ହୋଇଉଠିଲେ । ସୁରେନ୍ଦ୍ର ସଙ୍ଗେ କଥାବାର୍ତ୍ତା କଲି । ସମଗ୍ର ଭାରତ ବର୍ଷରୁ ଗୋଟିଏ ମାତ୍ର ହସ୍ତତନ୍ତ ଶିଳ୍ପୀକୁ ନିର୍ବାଚନ କରିଛନ୍ତି । ବନ୍ଧନ ଶିଳ୍ପ କଳାର ଜଣେ ଲେଖାଏଁ ହସ୍ତଶିଳ୍ପୀଙ୍କୁ ମଧ୍ୟ ମନୋନୀତ କରିଥିବେ ନିଶ୍ଚୟ । ତାଙ୍କ ହାତରେ ଯିବାକୁ ପଡ଼ିବ । ଯେପରି ୧୯୮୭ ମସିହାରେ ଆମେରିକା ଫିଲାଡେଲ୍‌ଫିଆ ପ୍ରଦର୍ଶନୀ ଠାରେ ଆମ ସ ରହିବାକୁ ପଡ଼ିଥିଲା । ସେପରି ଏବେ ସେ ସୁଯୋଗ ହେଉଛି । ଏଥି ଚିନ୍ତା କରିବାର କୌଣସି କାରଣ ନାହିଁ ବୋଲି ମୋ ପରିବାରର ସମସ୍ତଙ୍କୁ ବୁଝାଇଲି । ସୁରେନ୍ଦ୍ର ଦିଲ୍ଲୀର ପ୍ରଗତି ମଇଦାନ ହେଣ୍ଡିକ୍ରାଫ୍ଟ୍ସ୍ ଅଫିସକୁ ଫୋନ ଲଗାଇଲା । ସେଠାରେ ବିନୋଦ ମେହେର ସୁଦକ୍ଷ କର୍ମଚାରୀ ଭାବରେ କାମ କରନ୍ତି । ତାଙ୍କ ସଙ୍ଗେ ଆଲୋଚନା କରି କଥାବାର୍ତ୍ତା କଲା । ବିନୋଦ ବାବୁ କହିଲେ ପ୍ରଦର୍ଶନୀ ପାଇଁ ସବୁ ଜିନିଷ ପତ୍ର ଓ ସାମାନ ଗୁଡ଼ିକ ସଙ୍ଗରେ ଆଣି, ତାହା ଶୀଘ୍ର ଏଠାକୁ ଆସନ୍ତୁ । ଆଉମଧ୍ୟ ଅନ୍ୟାନ୍ୟ ରାଜ୍ୟରୁ

ସ୍ୱରପାଣ୍ଡ ଭଳି ଶିଳ୍ପୀ ଡ଼ଂ ଢ଼ଂ ପ୍ରଦର୍ଶନୀକୁ ଯିବାପାଇଁ ମନୋନୀତ ହୋଇ ଛନ୍ତି । ତାଙ୍କ ସଙ୍ଗେ ଏକାଠି ହୋଇ ବାହାରି ଯିବେ । କୌଣସି ଅସୁବିଧା ହେବ ନାହିଁ ।

ଆସନ୍ତା ତା ୨୨ରିଖ ଫେବ୍ରୁଆରୀ ମୁଁ ସମ୍ମତ ନ ହେବାରୁ ସେ ୨୭ ତାରିଖ ଧାର୍ଯ୍ୟକରି ଫୋନରେ ଜଣାଇଲେ ।

ବରପାଲି ରାଜବଂଶୀୟ ତଥା ପ୍ରଧାନ ସଭା ସଦସ୍ୟ ସ୍ୱର୍ଗତ ନିକୁଞ୍ଜ ବିହାରୀ ସିଂ, ସେ ବର୍ତ୍ତମାନ ଶ୍ରୀ ଶ୍ରୀ ରାଜମହେନ୍ଦ୍ର ଓ ସାହିତ୍ୟିକ, । ଗଙ୍ଗାଧର ସାହିତ୍ୟ ପରିଷଦର ସଭାପତି, ଗୁଣଗ୍ରାହୀ ଓ ଜ୍ଞାନୀ ବ୍ୟକ୍ତି । ମୋର ତାଙ୍କ ମାନ୍ ଯାଚ୍ୟ, ମୋତେ ସେ ଭଣଜା ବୋଲି ବହୁ ସ୍ନେହ କରନ୍ତି । ମୋଠାରୁ ଡ଼ଂ ଢ଼ଂ ଯାତ୍ରା ସମ୍ବାଦ ଶୁଣି ତାଙ୍କ ମନ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲା । ଶୁଭାଶିଷ ପ୍ରଦାନ କରି କହିଲେ ଭଣଜା ତୁମେ କୌଣସି ଚିନ୍ତା କରିବ ନାହିଁ । ତୁମେ ଆମର ଗୌରବ ନିର୍ବିଘ୍ନରେ ପ୍ରଦର୍ଶନୀରେ ଯୋଗଦେଇ ଯଥା ସମୟରେ ଫେରିଆସ । ଏତିକି କହି ଆଶୀର୍ବାଦ ପ୍ରଦାନ କଲେ ।

ସ୍ୱର୍ଗତ ଭଗୀରଥୀ ମହାପାତ୍ର ବରପାଲିର ବିଶିଷ୍ଟ ଭଦ୍ର ବ୍ୟକ୍ତି । ସେ ଜଣେ ବିଶିଷ୍ଟ ସମାଜ ସେବୀ ଶିକ୍ଷକ, ଲେଖକ, ପଣ୍ଡିତ,ସାହିତ୍ୟିକ, ଗୁଣଗ୍ରାହୀ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ, ଓଡ଼ିଶାର ସାହିତ୍ୟ ପରିଷଦର ସମ୍ପାଦକ ବହୁ ଆଦର୍ଶଗୁଣ ତାଙ୍କୁ ଅଳଙ୍କୃତ କରିଥିଲା । ସେ ମୋର ବିଦେଶଯାତ୍ରା ଡ଼ଂ ଢ଼ଂ ପ୍ରଦର୍ଶନୀ ସମ୍ପର୍କରେ ତାଙ୍କୁ ଜଣାଇଥିଲି । ତାଙ୍କମନ ବହୁତ ଆନନ୍ଦିତ । ବାବା ପୌତ୍ରଙ୍କୁ ଏହା ମିଳୁଥାଏ ବୋଲି ମୋ ଘରକୁ ଆସି ଶୁଭକାମନା କରି ଜଗନ୍ନାଥଙ୍କର ଫୁଲ ପ୍ରସାଦ ଦେଲେ ଓ ମୋତେ ବିଦାୟ କଲେ ।

ମୁଁ ଡ଼ଂ ଢ଼ଂ ପ୍ରଦର୍ଶନୀକୁ ଯାଇ ଯୋଗଦେବା ବିଷୟ ଶୁଣି ଶ୍ରୀଯୁକ୍ତ ବିନୋଦ ଚନ୍ଦ୍ର ମେହେର, ଶ୍ରୀଯୁକ୍ତ ନୃସିଂହ ଚନ୍ଦ୍ର ପଟ୍ଟନାୟକ, ଶ୍ରୀଯୁକ୍ତ ଭବାନୀ ଶଙ୍କର ପ୍ରଧାନ, ଶ୍ରୀଯୁକ୍ତ ପୁରନ୍ଦର ଦାଶ, ଅର୍ଯ୍ୟପଦ, ଗୀରଧର ଦାଶ (ପଣ୍ଡିତ) ଶ୍ରୀଯୁକ୍ତ ବଳଭଦ୍ର ପଧାନ, ଶ୍ରୀଯୁକ୍ତ ଗୁଣଧାରର ଓ ତପସ୍ୱୀ ଓ ବନ୍ଧୁଜନ ବୃନ୍ଦ ମୋଗୃହକୁ ଆସି ଶୁଭାଶିଷ ପ୍ରଦାନ କରି ବିଦାୟ କଲେ ।

ଇଷ୍ଟଦେବୀଙ୍କୁ ପ୍ରଣିପାତ ହୋଇ ପରିବାରର ସମସ୍ତଙ୍କୁ ଯଥା ସହ ଧର୍ମିଣୀ ହାରବତୀ, ପୁତ୍ରଦ୍ୱୟ ଦୟାଲୁ ଓ ସୁରେନ୍ଦ୍ର, ଝିଅ ଭୂମିସୁତା, ବୋହୂ ଦ୍ୱୟ ସ୍ୱର୍ଣ୍ଣଲତା ଓ ଶାନ୍ତିଲତା ଏବଂ ପୌତ୍ର ପୌତ୍ରୀ ନବକିଶୋର, ନନ୍ଦ,

ଦେବ କିଶୋର, ରଜା, ବୁନା ଓ ବୁନ୍ନୀ ଙ୍କୁ ଏକତ୍ରିତ କରି ଟେମ୍ପୋରେ ଘଣ୍ଟାଘରଠାରେ ସମସ୍ତଙ୍କୁ ଶୁଭାଶିଷ ପ୍ରଦାନ କରି ବିଦାୟ ନେଲି । ପୁତ୍ର ସୁରେନ୍ଦ୍ର, ଓ ମନୋବୋଧ ରଣା ଙ୍କ ମଧ୍ୟରେ ଆନ୍ତରିକ ଭାବ ପ୍ରବଣତା ବହୁ ଘନିଷ୍ଠ ହୋଇ ଅଛି । ସେ ମନବୋଧ ବାବୁ ରାଷ୍ଟ୍ରୀୟ ପୁରସ୍କାର ପ୍ରାପ୍ତ ସୁରେନ୍ଦ୍ର ସଙ୍ଗରେ କଥା ବାର୍ତ୍ତା କରି କହିଲେ ମୁଁ ବାପାଙ୍କ ସହିତରେ ଦିଲ୍ଲୀ ପ୍ରଗତି ମଇଦାନ ପର୍ଯ୍ୟନ୍ତ ଯିବି ବାପା ସେଠାରୁ ହଂ କଂ ଯାଇ ଫେରିଆସିବି ବୋଲି ପ୍ରସ୍ତୁତ ହେଲେ ।



## ହଂ କଂ ଅଭିମୁଖେ ଦିଲ୍ଲୀ ଯାତ୍ରା :—

ଅଦ୍ୟ ତା ୨୬।୧୦।୧୯୮୯ ମସିହା ଗୁରୁବାର ବେଳା ୨।୪୦ମିନିଟ ଶୁଭ ଯୋଗ ଲଗ୍ନରେ ବାସାରୁ ବରଗଡ଼ ବସଷ୍ଟାଣ୍ଡକୁ ପହଞ୍ଚିଲି । ବସଷ୍ଟାଣ୍ଡରେ ସମ୍ବନ୍ଧୀ ଶ୍ରୀଯୁକ୍ତ ନାରାୟଣ ମେହେର ଓ ଶ୍ରୀ ଗଣେଶଚନ୍ଦ୍ର ସାହୁ ଉପସ୍ଥିତ ହୋଇ ମୋ ଠାରେ ସାକ୍ଷାତ ହୋଇ ବିଦାୟ ଦେଲେ ।

ସନ୍ଧ୍ୟା ସମୟରେ ଝାରସୁଗୁଡ଼ାକୁ ମହାଶୂନ୍ୟ ପ୍ରଫୁଲ୍ଲବାବୁଙ୍କ ଘରେ ରାତ୍ରି ଯାପନ କରି ପରବର୍ତ୍ତୀ ଦିନ ଉତ୍କଳ ଏକ୍ସପ୍ରେସ୍ ଟ୍ରେନ ଯୋଗେ ଦିଲ୍ଲୀ ପହଞ୍ଚିଲୁ । ପ୍ରଗତି ମଇଦାନକୁ ଯାଇ ମନବୋଧ ସଙ୍ଗେ ମୋର ନେଇଥିବା ନକ୍ସା ସାମାନ ଓ ବାକ୍ସ ଗୁଡ଼ିକ ହେଣ୍ଡିକ୍ରାଫ୍ଟ୍ସ ଅଫିସ ଭିତରେ ରଖିଦେଲୁ ।

ତା ପରଦିନ ଦଶଟା ସମୟରେ ଅଫିସ ଖୋଲିହେଲା ବିନୋଦ ବାବୁ ଅମଲ ସାହେବ ଏବଂ ଅଫିସର ବୃନ୍ଦଙ୍କ ନିକଟରେ ସାକ୍ଷାତହୋଇ ବଡ଼ସାହେବ ଡାଇରେକ୍ଟର ଶ୍ରୀଯୁକ୍ତ ଜ୍ୟୋତିନ୍ଦ୍ର ଜୈନଙ୍କ ଅଫିସକୁ ଯାଇ ସାକ୍ଷାତ ହେଲି । ସେ ବହୁତ ଆନନ୍ଦ ମନରେ, ମୁଁ ନେଇଥିବା ନମୁନା ସମୂହ ଦେଖିଲେ । କାଗଜ ପତ୍ର ସମସ୍ତ ଜେରକ୍ସ କପି କରିବାପାଇଁ କର୍ମଚାରୀ ମାନଙ୍କୁ ଆଦେଶ ଦେଲେ ।

ଡେପୁଟି ଡାଇରେକ୍ଟର ଶ୍ରୀଯୁକ୍ତ ମୁସ୍ତାକ ତାଙ୍କ ଅଫିସ ସ୍ୱତନ୍ତ୍ର ରହି ଅଛି । ସେ ଜଣେ ବଡ ଭଦ୍ରବ୍ୟକ୍ତି ଅଟନ୍ତି । ମୁଁ ତାଙ୍କ ନିକଟକୁ ଯାଇ ସାକ୍ଷାତ ହେଲି । ମୋତେ ସମ୍ମାନର ସହିତ ବସନ୍ତୁ ବୋଲି କହିଲେ । ମୁଁ ହଂ କଂ ଯିବା ବିଷୟରେ କିଛି ଥୋଡ଼ା କଥନ ହେଲି । କଥାବାର୍ତ୍ତା ପ୍ରସଙ୍ଗରେ ମୋତେ ପଚାରିଲେ ମେହେର ଜୀ କଂସାରୀ କିସକୋ କହତେ ହେଁ । ସେ ହିନ୍ଦି ଭାଷାରେ କହନ୍ତି । ମୁଁ ମଧ୍ୟ ହିନ୍ଦିରେ କହିଲି ଆମ ଅଞ୍ଚଳ ର ଗୋଟିଏ ଜାତିକୁ କହନ୍ତି ଓ

ସେମାନେ କଂସା ପିତଳର ବାସନ ବର୍ତ୍ତନ ତିଆରି କରନ୍ତି । ମୁଷ୍ଟାକ ଖାଁ କହିଲେ ଆପଣ ସେ ବିଷୟ ସଠିକ ବିବରଣୀ କହନ୍ତୁ । ମୁଁ ଏହା ଇଂରାଜୀରେ ଲେଖିବି । ମୁଁ କହିଲି ମହାଶୟ, ଆମ ଭାରତ ବର୍ଷରେ ବହୁ ପ୍ରକାରର ଜାତି ଅଛନ୍ତି । ଆପଣ ପୁରାଣରୁ ଦେଖିଲେ ଆମ ଦେଶର ସଂସ୍କୃତିର ପ୍ରାଚୀନତା ପ୍ରସଙ୍ଗରେ ଜାଣି ପାରିବେ । ଆମ ଓଡ଼ିଆ କବି ଭକ୍ତଚରଣ ଦାସ ମଥୁରା ମଙ୍ଗଳ ନାମକ ପୁସ୍ତକ ଲେଖିଯାଇଛନ୍ତି । ଏହି ଗୋପ ପୁରରେ ଭଗବାନ ଶ୍ରୀକୃଷ୍ଣ ଅବତାରରେ ଜନ୍ମ ଗ୍ରହଣ କରିଥିଲେ । ମୁଁ ଏତିକି କହି ସେଠାରୁ ଗ୍ରନ୍ଥର ସହିତ ପଢୁଥାନ୍ତି ଓ ଲେଖୁଥାନ୍ତି । ଏ ପ୍ରସଙ୍ଗ ଶୁଣିବା ପାଇଁ ତାଙ୍କ ମନ ଆକୃଷ୍ଟ ହୋଇ ଗଲା । ମଥୁରା ପୁରର ରଜା କଂସ ବଡ଼ ଅତ୍ୟାଚାରୀ ଥିଲା । ସେ ଶ୍ରୀକୃଷ୍ଣଙ୍କର ମାମୁଁ, କଂସକୁ ସଂହାର କରି ମଥୁରା ପୁରରେ ଶାନ୍ତିଶୃଙ୍ଖଳା ସ୍ଥାପନ କଲେ । କହି ବନପୁରର ଭକ୍ତ ଉଦ୍ଧବକୁ ଗୋପପୁରକୁ ପଠାଇଲେ । ଉଦ୍ଧବ ତୁମେ ଗୋପପୁରକୁ ଯାଅ । ମୋ ପିତା ମାତା, ଭାଇବନ୍ଧୁ ତଥା ଗୋପୀମାନଙ୍କର ସମାଚାର ବୁଝି ଆସିବ ଓ ସେ ପ୍ରସଙ୍ଗରେ ମୋତେ ଜଣାଇବ । ଭକ୍ତ ଉଦ୍ଧବ ସମାଚାର ଆଣି ଜଣାଇଲେ ।

କଂସ ସେ ତାମ୍ବୁଳୀ ମାରନ        କାଳି ରତ ବଣିକ ଗଣେ
ସୁନାରୀ ହଳଦେ ଶାଙ୍ଖାରୀ
ଅନ୍ୟ ଅନ୍ୟ ଦେଶେ ଗଲେ        ଗୋପପୁରୁ ପଳାଇଲେ
ଯେଣୁ ଗୋପୀ ସୁବେଶ ନୁହନ୍ତି ।
ହେ ଯଦୁବନ୍ଧୁ, ତାଙ୍କସଙ୍ଗେ ଗଲା ମାଳାକାର
ଯେଣୁ ବଳା ନ ଗଲା ତାହାର ।

ଉଦ୍ଧବଙ୍କ ଠାରୁ ଏ ଦୁଃଖଦ ସମ୍ବାଦ ଶୁଣି ଶ୍ରୀକୃଷ୍ଣ ବିବ୍ରତ ହୋଇପଡ଼ିଲେ ।

ଏ ମର୍ମରେ ଡ଼ାଇରେକ୍ଟର ସାହେବ ଇଂରାଜୀରେ ଲେଖୁଥାନ୍ତି । ସେତିକିରେ ତାଙ୍କ ମନ ସନ୍ତୁଷ୍ଟ ହେଲାନାହିଁ । ପୁଣି ମୋତେ କହିଲେ ମେହେର ଜୀ ଏହା ହିନ୍ଦୀରେ ଲେଖିଥିଲେ ଭଲ ହୋଇଥାନ୍ତା । ଆପଣ ଚେଷ୍ଟାକରି ହିନ୍ଦୀରେ ଲେଖିପାରିବେ କି । ତାଙ୍କର ଏପରି ଶ୍ରଦ୍ଧା ଦେଖି ମୁଁ କହିଲି ଆସନ୍ତାକାଲି ଶାଙ୍ଖାରୀ ମାନେ ଏକତ୍ରିତ ହେଲେ ସେମାନଙ୍କ ପିତା ପ୍ରସଙ୍ଗରେ ନିଯୁକ୍ତ ହେବ । ନଆସିଲେ ଲେଖିବାକୁ ଚେଷ୍ଟା କରିବି । ତା ପରଦିନ ଉପରୋକ୍ତ ବିଷୟ ଲେଖି ଡ଼ାଇରେକ୍ଟର ମହାଶୟଙ୍କୁ ଦେଲି । ସେ ଆନନ୍ଦର ସହିତ କହିଲେ ମେହେର ଜୀ ଇସ୍‌କୋ ହମ ରେକର୍ଡ କରକେ ରଖେଙ୍ଗେ ।

# ଦିଲ୍ଲୀ ଅଫିସରେ ପ୍ରସ୍ତୁତି ପର୍ବ ଃ—

ପରବର୍ତ୍ତୀ ଦିନ ଅମଲ ସାହେବ କହିଲେ ମେହେର ଜୀ ଆପଣଙ୍କର ପାସପୋର୍ଟ ଆଣନ୍ତୁ । ଆଉ ଗ୍ରୁପର ଜଣ ଫାଇନ୍ସମେନ ଆସି ଗଲେଣି । ଭିସା କରିବାକୁ କନସଲ ଅଫିସକୁ ଯିବା । ୧୦ ଘଣ୍ଟା ସମୟରେ ଆମେ ପାଞ୍ଚ ଜଣ ଶିଳ୍ପୀଙ୍କୁ ଅଫିସର ଗାଡ଼ିରେ ବସାଇ କନସଲ ଅଫିସକୁ ନେଲେ । ଅଫିସ ଭିଡ଼ ହୋଇଥାଏ । ଘଣ୍ଟାଏ ପରେ ଆମକୁ ଡ଼କରା ହେଲା । ସେ ଅଫିସର କର୍ମଚାରୀ ବିଭିନ୍ନ ପ୍ରଶ୍ନ କଲେ । ଅମଲ ସାହେବତ ଅଭିଜ୍ଞ ଲୋକ ପାରଙ୍ଗମ ଓ ଅତି ସରଳ । ସେ ମୋତେ ଦାଦା କହନ୍ତି । ଅଫିସରେ ଭିସା କାମ ସାରି ପ୍ରଗତି ମଇଦାନର ଆମ ବସାକୁ ଫେରିଲୁଁ ।

ଅମଲ ସାହେବ ଆମ ଏକାଠି ହୋଇଥିବା ପାଞ୍ଚଜଣ ଶିଳ୍ପୀଙ୍କୁ ଆବାହନ କଲେ । ଶ୍ରୀ ରାମକିଶୋର ଛିପା ରାଜସ୍ଥାନର ପ୍ରିଣ୍ଟ ଟେକ୍ସଟାଇଲ କାମ, ମୋହନଲାଲ ସୋନି, ମହାରାଷ୍ଟ୍ରର ଚିତ୍ରକଳା, ସଲିମ ମହମ୍ମଦ ଉତ୍ତର ପ୍ରଦେଶର ଚିକନ ସିଲେଇ କାମ, ଜୟନ୍ତ ଚୋପ୍ରା ମଧ୍ୟପ୍ରଦେଶର ମୃତ୍ତିକା କାମ ଓ ମୁଁ କୃଷ୍ଣଚନ୍ଦ୍ର ମେହେର ଓଡ଼ିଶା ହସ୍ତତନ୍ତ ବାନ୍ଧ ରଙ୍ଗ କାମ । ଉକ୍ତ ପାଞ୍ଚଜଣ ଶିଳ୍ପ ସିନ୍ଦୂରର ଡାଇରେକ୍ଟର ଜ୍ୟୋତିନ୍ଦ୍ର ଜୈନ ସାହେବଙ୍କ ଅଫିସକୁ ପ୍ରବେଶ ହେଲୁଁ । ଅମଲ ସାହେବ ଓ ବିନୋଦ ଚନ୍ଦ୍ର ମେହେର ମଧ୍ୟ ଉପସ୍ଥିତ ହୋଇଥାନ୍ତି । ଜ୍ୟୋତିନ୍ଦ୍ର ଜୈନ ସାହେବ ଆମକୁ ବିଦେଶର ପ୍ରଦର୍ଶନୀ ଢଙ୍ଗରେ ବୁଝାଇଲେ ତଥା ବିଦେଶର ଲୋକଙ୍କ ସଙ୍ଗେ କିପରି ବ୍ୟବହାର କରାଯାଏ ତାହା ଉପଦେଶ ଦେଇ ପାଞ୍ଚଜଣ ଶିଳ୍ପୀଙ୍କର ଶିଳ୍ପ କଳା ସମ୍ବନ୍ଧରେ ସାର୍ଟିଫିକେଟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଶୁଭକାମନା କରି ବିଦାୟ କଲେ ।

ଆମର ପାଞ୍ଚଜଣ ଶିଳ୍ପୀଙ୍କର ଇନସ୍ୟୁରେନ୍ସ୍ କରାଗଲା ତଥା ମୋ ମଙ୍ଗାଶାଳର ଏବଂ ମୁଁ ନେଇ ଥିବା ନମୁନା କପଡ଼ା ଇତ୍ୟାଦିର ଇନସ୍ୟୁରେନ୍ସ୍ କରାହେଲା ।

ଆଜି ୩୦ ତାରିଖ ଦିନର ଇନ୍ଦିରା ଗାନ୍ଧୀ ଏୟାରପୋର୍ଟ ହବାଇ ଜାହାଜ ନଂ କୁ ଟିକେଟ ହୋଇଛି । ଆମେ ସମସ୍ତେ ରାତି ୯ଘଣ୍ଟା ସମୟରେ ଏଠାରୁ ରାତି ଭୋଜନ କରି ଅଫିସ୍‌ର ୨ଟା ଗାଡ଼ିରେ ସମସ୍ତଙ୍କର ମାଲପତ୍ର ବୋଝେଇକରି ଏୟାର ପୋର୍ଟକୁ ବାହାରିଲୁ । ୧୦ଘଣ୍ଟା ସମୟରେ ଗାଡ଼ିରେ ବସିଲୁଁ ଆମେ ପାଞ୍ଚଜଣ ଶିଳ୍ପୀ । ଅନ୍ୟ ଗାଡିରେ ସେକ୍ରେଟେରୀ ମିସେସ୍ ଏନ୍ ଏନ୍: ବେନେଗେଲ୍ ଓ ଆଉଜଣେ ମହିଳା ଅଫିସର ମିସେସ୍ ଅଶାଚ । ବଟେଲ୍ ବସିଥାନ୍ତି । ଇନ୍ଦିରାଗାନ୍ଧୀ ଏୟାର ପୋର୍ଟ ୧୦ ମାଇଲ ଦୂର ସେଠାରେ ପହଞ୍ଚି ଦେଖିଲି ଯେ ବହୁ ବିସ୍ତୀର୍ଣ୍ଣ ଚୌତାଘର । ତା ଭିତରେ ପ୍ରବେଶ କରି ଅନୁଭବ କରିହେଲା ନାହିଁ । ସେଠାରେ ଦେଖିହେଲେ ମନୁଷ୍ୟ ଚକିତ ହୋଇଯିବ । ସେ ମହିଳା ଅଫିସର ବହୁ ବହୁ ବିଚକ୍ଷଣ । ଇଂରାଜୀ ହିନ୍ଦି, ବଙ୍ଗଳା, ଗୁଜରାଟି, ତାମିଲ ଇତ୍ୟାଦି ଭାରତୀୟଭାଷା ଏବଂ ବିଦେଶୀୟ ଭାଷା ଜାଣନ୍ତି । ବହୁ ଶିକ୍ଷିତା ଓ ପ୍ରବୀଣା । ଆମର ଟିକେଟ ବୁକଙ୍କରୁ ଆରମ୍ଭ କରି ସମସ୍ତକାମ ତଥା ଭାରତୀୟ ମୁଦ୍ରା'କୁ ଡ଼ଲାର ଆକାରରେ ପରିବର୍ତ୍ତ କରିବା କାମ ସମ୍ପାଦନ କଲେ ।

ଉଡ଼ାଜାହାଜ ଷ୍ଟେସନ ମଧ୍ୟରେ ରାତି ସାରା କାଗଜ ପତ୍ର ତଦାରଖ କାମରେ ବ୍ୟସ୍ତ ହେବାକୁ ପଡ଼ିଲା । ମନରେ କଷ୍ଟ ଲାଗୁଥାଏ । ପ୍ରାୟ ୪ଘଣ୍ଟା ସମୟରେ ସେକ୍ରେଟେରୀଙ୍କ ଆଦେଶ ଅନୁଯାୟୀ ଫ୍ରଣ୍ଟ ଏସିଆ କାଉଣ୍ଟରଠାରେ ପ୍ରବେଶ କରି ଆମ ଗୃହର ସମସ୍ତେ ବସିଥାଉଁ । ଧୀରେ ଧୀରେ ବାହାରକୁ ସୂର୍ଯ୍ୟାଲୋକ ଦେଖା ଗଲା । ହବାଇ ଜାହାଜ ସଂଯୋଗ ହୋଇ ଲାଗିଥାଏ ଫ୍ରଣ୍ଟ କାଉଣ୍ଟରର ମୁଖ୍ୟଦ୍ୱାର ବେଶରେ । ୫ଘଣ୍ଟା ସମୟ ହୋଇଥାଏ ; ହବାଇ ଜାହାଜ ଭିତରକୁ ପାଦ ପଡ଼ିଲା । ପ୍ରବେଶ ସମ୍ମୁଖରେ ଦଣ୍ଡାୟମାନ ହୋଇ ଥାନ୍ତି ତାନ୍ତ୍ରିମୟୀ ଜଣେ ମହିଳା । ମଧୁ ହାସରେ ନମସ୍କାର କରି ସ୍ୱାଗତ କରୁଥାନ୍ତି । ମୋ ଟିକେଟ ନମ୍ବର ହୋଇଥିବା ସିଟ ପର୍ଯ୍ୟନ୍ତ ମୋତେ ନେଇଯାଇ ବିମାନର କର୍ମଚାରୀ ଜଣେ ଆସି ସୁବ୍ୟବସ୍ଥା କରି ଗଲେ । ଆମେ ପାଞ୍ଚଜଣ ଶିଳ୍ପୀ ଓ ମହିଳା ଦୁଇ ଗୋଟିଏ ଧାଡ଼ିରେ ବସିଗଲୁଁ । ସେ ସିଟ ଗୁଡ଼ିକ

ବଡ଼ ବଡ଼ ଓ ଆରାମ ଦାୟକ । ବସ୍ତୁ ସୁନ୍ଦର ପରିବେଶ । କୌଣସି ଲୋକଙ୍କ ମୁହଁରୁ ଉଦ୍‌ବେଗର କିମ୍ବା ଅଶାନ୍ତ ଭାବର ମନୋଭାବ ଦେଖାଯାଉ ନ ଥାଏ । ଶୃଙ୍ଖଳିତ ଭାବେ ବରଣ ମଧ୍ୟରେ ଯାତ୍ରୀ ସମୂହ ବସିଥାଆନ୍ତି ।

ବସିଥିବା ସିଟରେ ଆବଶ୍ୟକ ଯନ୍ତ୍ର ଖଞ୍ଜା ହୋଇ ଥାଏ । ଗରମ ଲାଗୁଥିଲେ ଥଣ୍ଡା ସୁଇଚ ଓ ଥଣ୍ଡା ସମୟରେ ଗରମ ସୁଇଚ ଟିପି ଆବଶ୍ୟକ ଆରାମ ପୂରଣ କରାଯାଏ । ଶୋଇବାପାଇଁ ସେଠାରେ ଗୋଟିଏ ସୁଇଚ ଟିପିଲେ ସିଟର ପଛ ପଟ ଦୋହଲି ପଡ଼େ । ବେଲ୍ଟ ଲଗିଥାଏ । ତାହା ନିୟମାନୁସାରେ ଅଣ୍ଟାରେ ଭିଡ଼ିବାକୁ ହୁଏ । ସିଟ ଉପରେ ବସିଥାଆନ୍ତି । ବିମାନର କର୍ମଚାରୀଗଣ ତାଙ୍କ କର୍ତ୍ତବ୍ୟ କର୍ମରେ ତତ୍ପର ହେଉଥାନ୍ତି । ସେ ଅବସରରେ ମୁଁ ଶୌଚାଳୟକୁ ଯାଇ । ନିତ୍ୟକର୍ମ ସମାପନ କରି ମୋ ସିଟ୍ ଉପରେ ବସି ଥାଏଁ । ଜଣେ ମହିଳା ତାଜା କମଳା ରସ ମୋଠାକୁ ବଢ଼ାଇଲେ । ଅନ୍ୟ ଜଣେ କର୍ମଚାରୀ ଚା କଫି ଦେଉଥାନ୍ତି । ତା ପରେ ଜଣେ କର୍ମଚାରୀ ପାନ ମସଲା, ଅଳଇଚ, ଲବଙ୍ଗ, ଶାନମଦୁସ୍ତ ଆଦି ବିତରଣ କରୁଥାନ୍ତି । ଚକଲେଟ ବିତରଣ ହେଲା । ସେ ଚକଲେଟ ପାଟିରେ ଧରି ଚୋଷି ଖାଇଲେ ବିମାନର ଶବ୍ଦ ବିଶେଷ ଜଣାପଡ଼େ ନାହିଁ ।

ବିମାନ ଭିତରେ ସିନେମା ସଦୃଶ୍ୟ ୪ଫୁଟ ଦୈର୍ଘ୍ୟ ଓ ପ୍ରସ୍ଥର ଭିଡ଼ିଓ ବୋର୍ଡ ଉପରେ ଜଣେ ବ୍ୟକ୍ତି ବିମାନର ସମସ୍ତ ନିୟମାବଳୀ ସଙ୍କେତ ସୂଚନା କରି ଜଣାଉ ଥାନ୍ତି । "ଆପଣ ମାନେ ନିଜ ନିଜ ସିଟରେ ସ୍ଥିର ହୋଇ ବସିଥାନ୍ତୁ । ବିମାନ ଆକାଶ ମଣ୍ଡଳକୁ ଉଠିବା ପର୍ଯ୍ୟନ୍ତ ଅଣ୍ଟାରେ ବେଲ୍ଟ ଭିଡ଼ି ରଖିଥିବେ । ଜରୁରୀ ପରିସ୍ଥିତି ଉପଗତ ହେଲେ, ବିମାନ ଚାଳକ (ପାଇଲଟ) ତଳକୁ ବିମାନ ଖସାଇ ଧୀର ଗତିରେ ନେଇ ପାରନ୍ତି । ତେଣୁ ଆଶଙ୍କା ନ କରି ଆପଣ ମାନେ ସ୍ଥିର ହୋଇ ବସିରହିଥିବେ । ଯଦି ଭୟ କରନ୍ତୁ ସିଟ ତଳେ ସଂଯୋଗ କରି ରଖା ହୋଇଥିବା ଜାକେଟ୍‌କୁ ପିନ୍ଧି ନେବେ । ଆବଶ୍ୟକ ପଡ଼ିଲେ, ପାଇଲଟ ସମୁଦ୍ର ପାଣି ନିକଟରୁ ଉଡ଼ାଣ ନେଇ ପାରନ୍ତି । ଏ ସମ୍ପର୍କରେ ସତର୍କତା ଅବଲମ୍ବନ କରିବେ ।

ଉଡ଼ାଣର ନିର୍ଦ୍ଦିଷ୍ଟ ସମୟରେ ସାଇରନ ଶୁଭିଲା । କିଛିକ୍ଷଣ ପରେ ବିମାନ ଧୀରେ ଧୀରେ ରେଡ଼ଉପରେ ଗଡ଼ିଗଲା । ସାମାନ୍ୟ ଶବ୍ଦ ହେବା

ଗୁଡ଼ିକର ଗୁଡ଼୍ ଗୁଡ୍ ଶୁଭୁଥାଏ । ସେଉଁ ଷ୍ପିଡ଼ ପର୍ଯ୍ୟନ୍ତ ଯାଇ ଆଗଚକ ଉପରକୁ ଉଠିଲା । ଗଛ ତଳ ଦୃଶ୍ୟରେ ଅଳ୍ପ ଦୂରକୁ ଯାଇ ଉପରକୁ ମୁଣ୍ଡ ଟେକି ଆକାଶ ମଣ୍ଡଳକୁ ଛୁଟିଲା । ସେତେବେଳେ ସୂର୍ଯ୍ୟୋଦୟର ସମୟ ହୋଇଥାଏ । ସ୍ୱଚ୍ଛ ଉଜ୍ଜ୍ୱଳ ଆକାଶକୁ ବିମାନ ଗତିକରୁ ଥାଏ । ଘରଦ୍ୱାର, କୋଠା ବାଡ଼ି ବୃକ୍ଷ, ପର୍ବତ, ନଦୀ, ସରୋବର ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ଆଖିରେ ଆଉ ଭୂପୃଷ୍ଠର କୌଣସି ବସ୍ତୁ ଦୃଷ୍ଟି ଗୋଚର ହେଉ ନାହିଁ । ମହାଶୂନ୍ୟ ଆକାଶ ନିର୍ମଳ ଦେଖାଯାଉ ଥାଏ । ଝରକା କାଚଦ୍ୱାରା ଅଦ୍ଭୁତ । ତଳ୍ପରେ ଅନାବିଲ ତତ୍ତ୍ୱ ଜନ୍ମସ୍ଥଳରେ ଧୂମ୍ରବର୍ଣ୍ଣ ଭଳି ତଥା ବାଦଲ ଖଣ୍ଡମାନ ମୋ ଦୃଷ୍ଟିକୁ ଅଧୂଥାଏ ।

ଯାତ୍ରୀ ଗୁରୁଜଣଙ୍କ ମନରେ ଉଦ୍‌ଗ୍ରତା ତଥା କୌତୁକ ମୁ ଅନୁଭବ କରୁଥାଏ । ସେ ମୋତେ ମଝିରେ ମଝିରେ ପଚାରୁ ଥାନ୍ତି । ବୋଧହୁଏ ସେ ଯାତ୍ରୀ ଗଣ କେବେ ବିମାନରେ ଆରୋହଣ କରି ବିଦେଶକୁ ଯାଇ ନଥିଲେ । ପ୍ରକୃତ କଥା ଯେଉଁ ବ୍ୟକ୍ତି ବିମାନରେ ବସି ନାହିଁ କମ୍ବା ବିଦେଶକୁ ଯାଇ ନାହିଁ ତା ମନ କଥା ସେ କେଜେ ବୁଝିବ ।

ପରମେଶ୍ୱରଙ୍କ କରୁଣାରୁ ୧୯୮୭ ମସିହାରେ ମୁଁ ଆମେରିକା ଫିଲାଡେଲଫିଆ ଯାଇଥିଲି । ପ୍ରଥମେ କଲିକତା ଦମ୍ ଦମ୍ ବିମାନ ବନ୍ଦରରୁ ବିମାନ ଆରୋହଣ କରି ବମ୍ବେଠାରେ ଅବତରଣ କଲି । ବମ୍ବେଠାରୁ ବୋଇଂ, ସୁପରସୋନିକ ଦ୍ରୁତଗାମୀ ବିମାନରେ ୫୦୦ ସିଟ୍‌ଥାଏ । ତହିଁରେ ଆରୋହଣ କରି ଆରବ ଦେଶ ଦୁବାଇ ରାଜଧାନୀ ଏଆର୍ ପୋର୍ଟରେ ରହଣି ୩୦ମି. । ତତ୍‌ପରେ ଲଣ୍ଡନ, ବିଲାତର ରାଜଧାନୀ, ତହିଁରେ ୨ ଘଣ୍ଟା ରହଣି ସେଠାରୁ ବିମାନ ଗତିକଲା ଆଟଲାଣ୍ଟିକ ମହାସାଗର ଉର୍ଦ୍ଧ୍ୱ ଦେଶରେ । ୧୧ଘଣ୍ଟା ପରେ ପହଞ୍ଚିଲି ନ୍ୟୁୟର୍କ ନଗରୀରେ । ତତ୍‌ପରେ ବିମାନ ପରି ବର୍ତ୍ତନ କରି ଛୋଟ ବିମାନରେ ପହଞ୍ଚିଲି ଫିଲାଡେଲଫିଆ ନଗରୀକୁ । ସେଠାରେ ସର୍ବ ଜନମନ ଅଭିବାଞ୍ଛିତ କରି ପ୍ରତ୍ୟାବର୍ତ୍ତନ କଲି । ସେ ଅବସରରେ ମୋତେ ଆଠଥର ବିମାନ ଆରୋହଣ କରିବାକୁ ପଡ଼ିଥିଲା ।

ଆମ ଭାରତ ବର୍ଷର ଠିକ ପୂର୍ବାଭିମୁଖ ବିମାନ ଗତିକରୁଥାଏ ତଥାପି ଭୌଗୋଳିକ କ୍ରାନ୍ତି ରେଖାର ଅନୁରୂପେ ପୂର୍ବ ଓ ଦକ୍ଷିଣ ଦିଗ ମଧ୍ୟରେ ଆଗ୍ନେୟ କୋଣକୁ ଫିଲିପାଇନ୍‌ସ ନର୍ଥ ପେସିଫି ଏସିଏନ ମହା-ସାଗର ଅଞ୍ଚଳ ରେ ହଂକଂ ଦେଶ ଅବସ୍ଥିତ ହୋଇଅଛି ।

ପୂର୍ବାହ୍ନ ୯ ଘଣ୍ଟା ସମୟରେ ଅଳ୍ପ ଭୋଜନ ଓ ଚା ପାନ କଲି । ୧୨ ଘଣ୍ଟା ସମୟରେ ମଧ୍ୟାହ୍ନ ଭୋଜନ ସକାଶେ ବିମାନର ମହିଳା କର୍ମଚାରୀ ମୋତେ ଗୋଟିଏ ଛୋଟ ବହି ଦେଲେ । ସେ ବହିଦେଖି ନିର୍ଦ୍ଦିଷ୍ଟ ଖାଦ୍ୟପାଇଁ ସଙ୍କେତ ଦେଲି । ୧୨ଘଣ୍ଟା ୩୦ ମିନିଟରେ ଖାଦ୍ୟ ସାମଗ୍ରୀ ଯୋଗାଇଲେ ଗୋଟିଏ ବଡ଼ ଟ୍ରେ ଥାଳିଆରେ । ଆଗ ସିଟର ପଛପଟେ ଥିବା ମିନିଟେବୁଲ ଟାକୁ ଖୋଲି ଦେଲି ତା ଉପରେ ଭୋଜନ ପାତ୍ର ଥୋଇ ଦେଇ ସେ ଚାଲି ଗଲେ । ପ୍ଲାଷ୍ଟିକରେ ସମସ୍ତ ଭୋଜନ ସାମଗ୍ରୀ ତଥା ପ୍ରତ୍ୟେକ ପୃଥକ [illegible] ଉପରେ ସିଲକରା ହୋଇଥାଏ । ୧୭ ପ୍ରକାର ର ଜିନିଷ । ଭାତ ସଙ୍ଗେ ସଙ୍ଗେ ଚାମୁଚ, ଛୁରୀ, ତଥା ଲୁଣ ଗୋଲ ମରିଚ ଚୂର୍ଣ୍ଣ, ଚିନି ପ୍ରଭୃତି ଛୋଟ ଛୋଟ ପାକେଟରେ ଜିନିଷ । ସର୍ବଦା ଭୋଜନ ସାଙ୍ଗ ସାଥି ଗଣଙ୍କ ସଙ୍ଗେ ବାର୍ତ୍ତାଳାପ ଚାଲିଥାଏ । ଏ ଅବସରରେ ରାତି ଜାଗରା ଓ ଶରୀର କ୍ଲାନ୍ତି ସକାଶେ ଗୋଟିଏ ଘଣ୍ଟା ପର୍ଯ୍ୟନ୍ତ ସିଟ ଉପରେ ନିଦ୍ରିତ ହୋଇପଡ଼ିଲି ।

ଜାଗ୍ରତ ହୋଇ ଦେଖିଲି ଅପରାହ୍ନ ୩ ଘଣ୍ଟା ହୋଇଥାଏ । ଧୀରେ ଗତିକରି ବିମାନ ତଳକୁ ଅବତରଣ କରୁଥାଏ । ସେ ସମୟରେ ସମୁଦ୍ରର ଦୃଶ୍ୟ ମୋତେ ଚକିତ କରି ପକାଇଲା । ବିସ୍ମିତ ହୋଇପଡ଼ିଲି । ସମୁଦ୍ର ଜଳ ଆକାଶ ଛୁଇଁ ବାଦଲ ରୂପ ଧାରଣ କରି ଆକାଶ ମଣ୍ଡଳରେ ମିଶି ଯାଉଛି ।



# ଉତ୍କଳ ଦେଶର ଦୃଶ୍ୟ ଃ—

ଭାଲ ନିରୀକ୍ଷଣ କଲେ ଦେଖାଯାଇଥାଏ ସମୁଦ୍ର ବକ୍ଷରେ ସ୍ଥାନେ ସ୍ଥାନେ ପାହାଡ଼ ପଥର ମୁଣ୍ଡଟେକି ଛିଡ଼ା ହୋଇଛନ୍ତି ତଥା ଭୂପୃଷ୍ଠରୁ ବାୟୁ ପ୍ରବାହିତ ହୋଇ ସମୁଦ୍ର ବକ୍ଷରେ ଘର୍ଷଣ କରି ଘୂର୍ଣ୍ଣିବାତ୍ୟାର ପ୍ରାଦୁର୍ଭାବ ସୃଷ୍ଟି କରନ୍ତି । ତରଙ୍ଗ ସମୂହ ପାହାଡ଼ ଉପରେ ସଂଘର୍ଷ କରି ଆକାଶ ଉପରକୁ ଲମ୍ଫ ପ୍ରଦାନ କରିବାରେ ଉଦ୍‌ବେଗ । କବି ଓ ପଣ୍ଡିତ ଜନ ସେ ଦୃଶ୍ୟକୁ ଦେଖିଲେ ତାଙ୍କର ଉତ୍ସାହ ସ୍ଫୂର୍ତ୍ତି କଲମର ମୁନ ଉଦଗୀରିତ କରି ହେଉଥାନ୍ତା ସେ ରହସ୍ୟକୁ ।

ସମୁଦ୍ରର ଜଳ ଓ ବାୟୁ ଏକତ୍ର ହୋଇ ତରଙ୍ଗ ସୃଷ୍ଟି କରୁଅଛନ୍ତି । ଅତଏବ ଉତ୍କଣ୍ଠିତ ହୋଇ ପାହାଡ଼ ପର୍ବତକୁ ଉଠି ଅଣୁ ଅଣୁ ବାଷ୍ପ ଗଠିତ କରି ସବୁଠି ବାଷ୍ପ ବାଦଲ ରୂପରେ ଅନ୍ତରୀକ୍ଷକୁ ଆଚ୍ଛାଦିତ କରନ୍ତି । ସଂକେତ ତା ଅଭିଳାଷ ପ୍ରକାଶ ହେବ ତାପ ଯୋଗୁଁ ପୃଥିବୀ ମାତାଙ୍କୁ ସାନ୍ତ୍ୱନା ପ୍ରଦାନ କରିବା ସଙ୍ଗେ ମେଘ ସୃଷ୍ଟି କରି ମେଘ ମାଳାରେ ସୂର୍ଯ୍ୟଙ୍କର 'ରଶ୍ମି ତାପକୁ' ମୁଣ୍ଡରେ ମୁଣ୍ଡେଇ, ପୃଥିବୀ ମାତାଙ୍କର ଧରିତ୍ରୀ ଉପରେ ଜଳକଣା ବୃଷ୍ଟିପାତ କରି ଶୀତଳ କରିବ । ଏହା ମେଘର କର୍ତ୍ତବ୍ୟ । କର୍ତ୍ତବ୍ୟ କରିବା ସଙ୍ଗେ ସଙ୍ଗେ ଏହା ଫଳରେ ଧର୍ମ ହେବ ।

ଉପରୋକ୍ତ ସମ୍ବନ୍ଧରେ ମୁଁ ଅଧିକ ଲେଖିପାରୁ ନାହିଁ ଏ ଅଦ୍ଭୁତ ଦୃଶ୍ୟ ଦେଖି ମୋ ମନଟା ଚକିତ ହୋଇ ଦେଉଥାଏ ।

କୁହୁଁ କୁହୁଁ ବିମାନ ଧୀରେ ଗତିକରି ତଳକୁ ଓହ୍ଲାଇଲା ବେଙ୍କଟ୍ ଦେଶରେ । ବିମାନରୁ ଯାତ୍ରୀ କେତେ ଜଣ ଅବଲୋକନ ପରିଦର୍ଶନ କଲେ ।

୩୦ ମିନିଟ ସମୟ ଏଆର ପୋର୍ଟରେ ରହି ପୁଣି ଉପରକୁ ଉଠିଗଲେ, ହଂକଂ ଅଭିମୁଖେ । ମୁଁ ପିନ୍ଧିଥିବା ଘଣ୍ଟାରେ ଆମଷ୍ଟରଡମ୍ ଟାଇମ ରଖିଥିଲି । ଦିଲ୍ଲୀଠାରୁ ହଂକଂଦେଶକୁ ବିମାନରେ ଯାତ୍ରାକଲେ ୭ଘଣ୍ଟା ସମୟ ଲାଗିଥାଏ । ହଂକଂ ଏଆର ପୋର୍ଟରେ ଘ ୪।୧୫ ମିନଟ ସମୟ, ଧୀର ଗତିରେ ବିମାନ ତଳକୁ ଅବତରଣ କରୁଥାଏ । ସମୁଦ୍ର ଉପର କୋଠାବାଡ଼ି ଇତ୍ୟାଦି ଦୃଶ୍ୟ ଅତି ମନୋରମ ଦେଖାଯାଉ ଥାଏ । ବିମାନ ଅଟକି ହେଲାରୁ ସଙ୍ଗେ ସଙ୍ଗେ ପ୍ରକାଣ୍ଡ ସିଢ଼ି ସଂଯୋଗ ହେଲା । ଆମେ ତଳକୁ ଆସି ବିମାନ ବସରେ ବସିଗଲୁ । ସେ ବସର ଡ୍ରାଇଭର ବସର ପଛପଟେ ବସି ଗାଡ଼ି ଚଳାଉ ଥିଲେ । ଗାଡ଼ିର ଇଞ୍ଜିନ ମଧ୍ୟ ପଛଆଡ଼େ ଥାଏ ।

ଏଆର ପୋର୍ଟରେ କେତେ ଯେ କୋଠାଘର, କାଉଣ୍ଟର ଅଫିସ୍ ତାହା ସହଜରେ କଳନା କରି ହେବ ନାହିଁ । ସେ ମାଡାମ ଦୁହେଁ ଆମକୁ ବୁକିଙ୍ଗ କାଉଣ୍ଟରକୁ ନେଲେ । କଷ୍ଟମସ ଅଫିସଠାରେ ମୋର ମଙ୍ଗାସାମାନ ସମସ୍ତକୁ ନିରୀକ୍ଷଣ କରୁଥାନ୍ତି । ଚିନା ଦେଶୀୟ ଅଫିସର ବୈଜ୍ଞାନିକ ଯନ୍ତ୍ର ଦ୍ୱାରା ଚେକିଙ୍ଗ କରି ମୋତେ ପଚାରିଲେ ଏଇଟା କଣ ? ମାଡାମ କହିଲେ ଇଣ୍ଡିଆରୁ ଏ ହେଣ୍ଡଲୁମ କାଠର ଯନ୍ତ୍ର ପ୍ରଦର୍ଶନୀକୁ ଆସୁଅଛି ଓ ଏ ହେଉଛି ହସ୍ତଶିଳ୍ପୀ । ତାଙ୍କର ହୃଦବୋଧ ହେଲା ନାହିଁ । ତଥାପି ଗୋଟିଏ ବଣ୍ଡିଲ ଫାଡ଼ି ତଦାରଖ କରି ଆମ ଦେହର ପାଦଠାରୁ ଶିର ପର୍ଯ୍ୟନ୍ତ ଚେକକରି ଛାଡ଼ିଲେ । ଆଉ ଗୋଟିଏ ଅଫିସରେ ପାସପୋର୍ଟ ଭିସା କାଗଜ ପତ୍ର ଯାଞ୍ଚ ହେଲା । ବହୁତ ସତର୍କତା ଅବଲମ୍ବନ କରି ତଦାରଖ କରୁଥାନ୍ତି । ସମସ୍ତ ବିଶ୍ୱାସ ନ ଆସିବା ପର୍ଯ୍ୟନ୍ତ ଛାଡ଼ନ୍ତି ନାହିଁ ।

ଏଆର ପୋର୍ଟ ପରିସର ବାହାରେ ୨ଟା କାର ଆସି ଆମକୁ ଅପେକ୍ଷା କରିଥାନ୍ତି ହଂ କଂ ପ୍ରଦର୍ଶନୀ ସଂପୃକ୍ତ ଲୋକମାନେ । ସେ ଗାଡ଼ିର ଆଗପଟ ସିଟ୍‌ରେ ବସିଲେ ସେକ୍ରେଟେରୀ ମାଡାମ ୨ଜଣ । ବୋଧହୁଏ ଡ୍ରାଇ- ଭର ଗାଡ଼ି ଚଳାଉ ଥାନ୍ତି । ଗାଡ଼ି ଅଣ୍ଡରକୁ ଗଲାପରେ ମୋ ଜୀବନଟା ଟିକିଏ ଧକ୍ ଧକ୍ ଲାଗିଲା । ବସିଥିବା ଭାଇ ଗଭୀର ଗର୍ତ୍ତ କୋଠାଘର ଭିତରକୁ କ୍ଷିପ୍ରଗତିରେ ଛୁଟିଯାଉଛି । ମନରେ ଆଶଙ୍କା ଜାତ ହେଲା । ଜୀବ- ନକୁ [illegible]

[illegible]

ଫଳରେ ଏ ସୁଡ଼ଙ୍ଗ, ସୁଡ଼ଙ୍ଗ ମାର୍ଗରେ ଆମର ଏ ଗାଡ଼ି ଯାଉଛି । ମୁଁ ପଚାରିଲି ସମୁଦ୍ର ତଳେ ଥିବା ଦେଶକୁ ଆମେ ଯାଉଛୁ କି ? ମାତାଜୀ ମହାଶୟା ହସିଦେଇ କହିଲେ ୧୪ କି:ମି; ଯେପର୍ଯ୍ୟନ୍ତ ଏ ସୁଡ଼ଙ୍ଗରେ ଆମ ଗାଡ଼ି ଚାଲିବ । ସେ ଅବକାଶରେ ମୁଁ ଭାବୁଥାଏ ଏ ଅବଧି ପରିଧି ମଧ୍ୟରେ ରତ୍ନାକର ସୃଷ୍ଟି ତଥା ବରୁଣ ରାଜାଙ୍କର ଦେଶ କିପରି ହୋଇଥିବ । ଜଗତ୍ ମାତା ପରମ ଲକ୍ଷ୍ମୀ ଯେଉଁ ସମୁଦ୍ରର ଅଧିପତି ବରୁଣ ଦେବତାଙ୍କର ନନ୍ଦିନୀ । ଭଗବାନ ଶ୍ରୀକୃଷ୍ଣ ଏହି ସୁଡ଼ଙ୍ଗ ମାର୍ଗରେ ଯାଇ ଦେବକୀଙ୍କ ଷଡ଼ ପୁତ୍ର ଓ ଶାନ୍ଦୀପନିଙ୍କ ମୃତପୁତ୍ର ଆଣିଥିଲେ କି ? ଏପରି ବିକଳ୍ପ ଚିନ୍ତା ଜାଗ୍ରତ ହେଉଥାଏ ।

ଆମେ ବସିଥିବା ଗାଡ଼ି ଗଭୀରତାରେ ଯାଉଥାଏ । ସେ ସୁଡ଼ଙ୍ଗର ଚତୁର୍ଦ୍ଦିଗ କୋଠାଘର ସଦୃଶ ତଥା ବିଦ୍ୟୁତ ଆଲୁଅରେ ଝଲମଲ କରି ଝଲୁଥାଏ । ଗାଡ଼ିଟି ସୁଡ଼ଙ୍ଗ ଅତିକ୍ରମ କରି ଉପରକୁ ଉଠି ସହର ମଧ୍ୟରେ ପଶିଗଲା । ସନ୍ଧ୍ୟା ସମୟ ହୋଇଛି ବୋଲି ନଗରୀକୁ ବିଦ୍ୟୁତ ବତୀ ସବୁ ଆଲୋକିତ କରୁଛି । ସହର ଭିତରେ, ପ୍ରଦର୍ଶନୀର ଅଫିସ କୋଠରୀର ସାମ୍ନାକୁ ପହଞ୍ଚିଲୁ । ଅଫିସ କୋଠରୀରେ ମୋର ସଙ୍ଗୀ ସାମାନ ଓ ବଡ଼ ବଡ଼ ବାକ୍ସ ରଖା ହେଲା । ଆମେ ୫ଜଣ ଶିଳ୍ପୀଙ୍କ ସ୍ୱତନ୍ତ୍ର ବ୍ୟବସ୍ଥା କରିବା ପାଇଁ ୨ଜଣ କର୍ମଚାରୀ ସିଡ଼ି ଉପରକୁ ନେଲେ । ବହୁତ ବଡ଼ ଅଟ୍ଟାଳିକା । ଲିଫ୍ଟର ସୁଇଚ ଟିପି ଦେଲେ । ୧୧ ପ୍ରସ୍ଥ ଉପର କୋଠରୀକୁ ପହଞ୍ଚିଲୁ । ୫ଜଣ ଶିଳ୍ପୀ ରହିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥାଏ । ରାତି ଭୋଜନ ପାଇଁ ରୁଟି ପନିର ଦୁଧ ଇତ୍ୟାଦି ଯୋଗାଇଲେ ।

ଆମ ଭାରତର ସୂର୍ଯ୍ୟୋଦୟ ଠାରୁ ହଂ କଂ ଦେଶରେ ୩ଘଣ୍ଟା ବ୍ୟତିକ୍ରମ ହୋଇଥାଏ । ଭାରତ ବର୍ଷର ଅପରାହ୍ଣ ୩ଘଣ୍ଟା ସମୟରେ ସନ୍ଧ୍ୟା ହୁଏନା ଓ ରାତି ୩ଘଣ୍ଟା ସୂର୍ଯ୍ୟୋଦୟ ହୁଏନା । ଭାରତର ଓ ଆମ ଓଡ଼ିଶା ରାଜ୍ୟର ଜଳବାୟୁ ସହିତ ବିଶେଷ କିଛି ତଫାତରେ ପରିବର୍ତ୍ତନ ଜଣାଗଲା ନାହିଁ ।

ପ୍ରଥମ ରାତିରେ ଅଳସ ନିଦ୍ରା ଅବସ୍ଥାରେ କଟିବାକୁ ପଡ଼ିଲା । ମୋ ଶରୀର ସାମାନ୍ୟ ଅସୁସ୍ଥ ଲାଗୁଥାଏ । ଆମ ରହିବା ପ୍ରକୋଷ୍ଠରେ ବାଥ୍‌ରୁମ ଇତ୍ୟାଦିର ସୁ ବନ୍ଦୋବସ୍ତ କରାହୋଇଥିଲା । ପ୍ରାତଃକାଳରୁ

ଲନ୍ୟଙ୍ଗ୍ ମାନ୍ଧ ଗୃ ଦାନ କଲୁଁ । ଆମକୁ ନେବା ଆସିବା ପାଇଁ ସଙ୍ଗରେ ୨ଜଣ ଯୁବକ ଯଥା ସମସ୍ତରେ ଆସୁଥାନ୍ତି । ଜଣେ ହେଉଛନ୍ତି ପାକସ୍ଥାନ ଯୁବକ ମହମ୍ମଦ ଅଜିମ ଖାଁ ଓ ଜାପାନୀ ଯୁବକ ନାଟୁ ମୁରୋ । ସେ ପାକସ୍ଥାନୀ ଯୁବକ ଅତି ସରଳ ଓ ନମ୍ର ଭଦ୍ର କହନ୍ତି ଶିଷ୍ଟାଚାର ମଧ୍ୟ ଉତ୍ତମ । ସେ ଆମ ଭାରତ ବର୍ଷରେ ୧୦ବର୍ଷ କାଳ ରହିଥିଲେ । ତେଣୁ ହିନ୍ଦିଭାଷା ସ୍ପଷ୍ଟ କହନ୍ତି । ଜାପାନୀ ଯୁବକ ମଧ୍ୟ ସରଳ ଶାନ୍ତ ଶିଷ୍ଟ । ସେ ଅଳ୍ପ ହିନ୍ଦିଭାଷା ବୁଝନ୍ତି କିନ୍ତୁ କହି ପାରନ୍ତି ନାହିଁ ।



## ହଂକଂ ନଗରୀର ଚମତ୍କାରିତା ଃ—

ଆମେ ଯେଉଁ କୋଠରୀରେ ରହିଥିଲୁଁ ତଳପ୍ରସ୍ଥ ଫଳକ ଶେଷ ହସ୍ତା । ତଳ ପ୍ରସ୍ଥ ମୋଟର ଭାର ର ଷ୍ଟେଣ୍ଡ । ଅସଂଖ୍ୟ ଭାର ତହିଁରେ ରଖା ହୁଏ । ତଳ ପଷ୍ଟକୁ ଓହ୍ଲାଇ ସମୁଦ୍ର ତଟର ବାଲୁକା ନିକଟରେ ଛିଡା ହେଲି । ପଶ୍ଚିମାଞ୍ଚଳ ଦିଗକୁ ଅନାଇଲି ଯେ ସମୁଦ୍ର ପ୍ରାନ୍ତରୁ ଉପର ଉପରକୁ କେବଳ କୋଠାଘର ଉଠି ଆସିଛି । ମୁଁ ଠିଆ ହୋଇଥିବା ସ୍ଥାନରୁ ସମୁଦ୍ର ପର୍ଯ୍ୟନ୍ତ ଦୂରତ୍ୱର ପ୍ରାୟ ୧ କିଲୋମିଟର ହେବ । ଅନ୍ୟମନସ୍କ ହୋଇ ଉପରକୁ ମୁଣ୍ଡଟେକି ଠିଆ ହୋଇଅଛୁ ଅଟ୍ଟାଳିକା । ଧାରଣା ହେଲା ମୋ ମନରେ ସମୁଦ୍ର ଗର୍ଭରୁ ଏ ସୌଧ ଶ୍ରେଣୀ ଉପରକୁ ଚଢି ଆସୁଛନ୍ତି । ସୌଧ ଶ୍ରେଣୀ ମାନଙ୍କର ନମ୍ର ପୃଷ୍ଠଠାରେ ଶେଷ ଘସ୍ତା ଭୂମି ଉପରେ ବଙ୍କା ବଙ୍କି ହୋଇ ରସି ଖଣ୍ଡେ ପଡିଥିଲେ ଯେମିତି ଦିଶେ । ପ୍ରଥମେ ବନ୍ଦରର କିଛି ଅଂଶ ଦେଖି ଚମତ୍କୃତ ହୋଇ ପଡ଼ିଲି । ଉପରକୁ ମୁଣ୍ଡ ଟେକି ଅନାଇଲି ଯେ ଧାଡ଼ି ଧାଡ଼ି ହୋଇ ଅଗଣନ ପ୍ରସ୍ଥ ବିଶିଷ୍ଟ ଯଥା ମକାଫଳକୁ ଠିଆ କରି ରଖିଲେ ଯେପରି

ହସେ । ଅଟ୍ଟାଳିକା ସମୂହ ନଭସ୍ଥଳୀରୁ ବନ୍ଧା ହୋଇ ଝୁଲୁଛି ସତେ । ସମୁଦ୍ର ବକ୍ଷରୁ ବାଷ୍ପ ନିର୍ଗତ ହୋଇ ତଥା ବାଦଲ ଖଣ୍ଡ ଗୁଡ଼ିକ ଆସି ସେ ସଉଧ ଶ୍ରେଣୀ ମାନଙ୍କୁ ଆଲିଙ୍ଗନ କରୁଥାନ୍ତି । କୃତ୍ରିମ ଆଲୋକ । ରାସ୍ତା ଉପରେ ଦୃଷ୍ଟି ହବା ଛୁଞ୍ଚୁଛୁଞ୍ଚୁ ପାଣି । ଶାସ୍ତ୍ରରେ ଅଛି "ଅରଣ୍ୟ ଭେଜ ଚନ୍ଦ୍ରବା ପଥାଦ୍ରଣ୍ୟମ୍ ତଥାଗୃହମ୍ ।' ଏଠାତ ଅରଣ୍ୟ ନୁହେଁ ପର୍ବତ ମାଳା । ତା ମଧ୍ୟ ନୁହେଁ ଦେଖା କୋଠାଗୁଡ଼ ଆକାଶକୁ ମୁଣ୍ଡ ଟେକିଛି । ତା ମଧ୍ୟ ନୁହେଁ । ପର୍ବତ ଶ୍ରେଣୀ ମଧ୍ୟରେ ଆକାଶରୁ ଝୁଲୁଛି ଏ ଅଟ୍ଟାଳିକା ଚିତ୍ର । ତା ମଧ୍ୟ ବୋଧଗମ୍ୟ ହେଲ ନାହିଁ, କିମ୍ବା ଏ ଭଳି ନଗର ସମ୍ପୂର୍ଣ୍ଣ ଶୁଣିନାହିଁ ଆମ ଭାରତ ବର୍ଷର ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ, ଓ କଲିକତା ଭଳି ସମତଳ ବସତି ନୁହେଁ । ମନରେ ବହୁ ପ୍ରଶ୍ନ ଜାତ ହେବା ସଙ୍ଗେ ସଙ୍ଗେ ଚକିତ ହୋଇ ପଡ଼ିଲି ।

ଭାବକୁ କୌଣସି ପ୍ରସଙ୍ଗରେ ଆଜି ମସ୍ତିଷ୍କରେ ସ୍ଥାନ ନଥିଲା ମୁଁ କେଉଁଠାକୁ ଆସିଛି । କେଉଁ ଦେଶରୁ, ପୃଥିବୀର କେଉଁଠା କେଉଁ ସ୍ଥାନ । ମୁଁ କେଉଁଠାରେ ଠିଆ ହୋଇ ଅଛି । କାହିଁକି ଓ ମୁଁ କଣ କରିବ ।

ଶାସ୍ତ୍ରୋକ୍ତ ମତରେ ଏ ସ୍ୱର୍ଗପୁର ନା ପାତାଳପୁର, କିମ୍ବା ଭୌଗୋଳିକ ବିଜ୍ଞାନ ମତରେ ପୃଥିବୀର କପାଳ ଦେଶଟିଏ । ଏଠାରେ ତ ମାଟି ସ୍ଥଳ ଭଳି ନାହିଁ । ଅଥଚ କିମ୍ବା କୌଣସି ସ୍ଥାନ ଦେଖିମଧ୍ୟ ଖାଲି ପଡ଼ିନାହିଁ । ସ୍ଥାନେ ସ୍ଥାନେ ଫୁଲ ବଗିଚା ଫୁଲ ଫୁଲରେ ପରିପୂର୍ଣ୍ଣ । କେଉଁ ଫୁଲ କେଉଁ ଜାତିର ତାହା ଠିକ୍ ହେଉନାହିଁ । ପର୍ବତ ପଥର ଚଟାଣ ଉପରେ ସଉଧ ଶ୍ରେଣୀ ଓ ରାସ୍ତା ।

ନ୍ୟୁୟର୍କ ଫିଲାଡେଲଫିଆ, ନୋର୍ଥ ଅଫ ହ୍ୱାସିଂଟନ ମ୍ୟୁଜିୟମ କର୍ଣ୍ଣେଲ ୟୁନିଭରସିଟି, ନ୍ୟୁଜର୍ସି, ଲଙ୍ଗଉଡ ଗାର୍ଡେନ, ପ୍ରଭୃତି ସ୍ଥାନ ଭ୍ରମଣ କଲ ସୁଦ୍ଧା ଏବେ ବି ବାହାର ହୋଇ ନ ଥିଲି । ଏ ସବୁ ଦୃଶ୍ୟାବଳୀ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେବା ସଙ୍ଗେ ସଙ୍ଗେ ମୋ ମନ କିପରି ଟିପି ରଖୁଥାଏ ।

## ସମୁଦ୍ର ଭ୍ରମଣ :—

ସ୍ୱର୍ଣ୍ଣଙ୍କର ଅଫିସ ଗାଡ଼ି ଆମକୁ ନେବା ପାଇଁ ସେଠି ଉପରେ ଉପସ୍ଥିତ ହୋଇଥାଏ । ସମସ୍ତେ ଗାଡ଼ିରେ ବସି ପ୍ରଦର୍ଶନୀର ଅଫିସ ଗୃହକୁ [illegible] ସେକ୍ରେଟେରୀ ମିସେସ୍ ଉମା ପ୍ରକାଶ ଆମ ପାଖ





ଢ଼ଂ ଜଂ ପର୍ବତ ଶ୍ରେଣୀ ମଧ୍ୟରେ ଏଭେରୋଷ ଶ ଙ୍ଗ ଉପରେ ସଉଧବଦୃଶ୍ୟ ।

ଜଣ ଶିଳ୍ପୀଙ୍କର ପରିଚୟ ଦେଇ ସମ୍ବୋଧନ କରି ଆନନ୍ଦିତ ହେଲେ । ସେ କହିଲେ ଆମ ଭାରତୀୟ ଶିଳ୍ପୀ ମାନେ ତୁମ ନିଜ ନିଜର ସାମାନ ଓ ନମୁନା ଗୁଡ଼ିକ ସୁ ସଜ୍ଜିତ କରି ରଖିଥାଅ । ଆସନ୍ତା କାଲି ୮ତାରିଖ ଠାରୁ ପ୍ରଦର୍ଶନୀ ୭ଦିନ ପାଇଁ ତଥା ୧୫ ତାରିଖ ପର୍ଯ୍ୟନ୍ତ ରହିବ । ଆପଣ ମାନେ ଆଜି ମଧ୍ୟାହ୍ନ ୨ ଘଣ୍ଟା ସମୟରେ ସମୁଦ୍ର ଭ୍ରମଣ କରି ୨ ନମ୍ବର ସିଟି ସିଲୋନ ନଗରୀ ଠାରୁ ଯାଇ କେତେକ ଦର୍ଶନୀୟ ସ୍ଥାନ ପରିଭ୍ରମଣ କରି ଆସନ୍ତୁ । ଏ ଦେଶ ହେଉଛି ସମୁଦ୍ର ବକ୍ଷରେ ସୌନ୍ଦର୍ଯ୍ୟର ଭଣ୍ଡାର ।

ପାକିସ୍ଥାନୀ ଯୁବକ ଓ ଜାପାନୀ ଯୁବତୀ ଆମକୁ ସଙ୍ଗରେ ନେଇ ଅଗ୍ରସର ହେଲେ । ଯାଉ ଯାଉ ସହର ଭିତରେ ଚାଲିକି ଚାଲି ସମୁଦ୍ର କୂଳକୁ ଗଲୁଁ । ସେହି ଉପରେ ଗେଟ ପଡ଼ିଛି । ଗେଟ କର୍ମଚାରୀ ମାନଙ୍କ ଓ ଗେଟର ଦ୍ୱାରରେ ମଧ୍ୟ ନାହିଁ । ପାକିସ୍ଥାନୀ ଯୁବକ ମୋତେ ଗୋଟିଏ ହଂ କଂ ୧ଟଙ୍କା ମୁଦ୍ରା ଦେଇ କହିଲେ ଏ ବାକ୍ସ ଯନ୍ତ୍ରରେ ଏ ମୁଦ୍ରା ନେଇ ପକାନ୍ତୁ ବାଟ ଖୋଲା ହେବ, ଶୀଘ୍ର ଚାଲିଯିବେ । ସେ ମୁଦ୍ରା ନିକ୍ଷେପ କରିଦେଲି । ତତ୍କ୍ଷଣାତ୍ ଗେଟ ଖୋଲିଯିବାରୁ ମୁଁ ଚାଲିଗଲି । ସେହିପରି ସମସ୍ତେ ମୁଦ୍ରା ନିକ୍ଷେପ କରି ଚାଲି ଆସିଲେ । ଆଉ ଗୋଟିଏ ଗେଟ ନିକଟକୁ ଗଲୁ । ସେଠାରେ ପ୍ରତି ଜଣକୁ ୩ଟଙ୍କା ମୁଦ୍ରା ନିକ୍ଷେପ କରିବାକୁ ପଡ଼େ । ତହିଁରେ ମୁଁ ମୁଦ୍ରା ନିକ୍ଷେପ କଲି ଜାହାଜ ଭ୍ରମଣର ଟିକେଟ ବାହାରି ପଡ଼ିଲା । ଟିକେଟ ପାଇ ଆମେ ଜାହାଜ ଉପରେ ପ୍ରବେଶ କଲୁ । ଜାହାଜ ଭିତର ପରିଷ୍କାର ପରିଚ୍ଛନ୍ନ, ନିଜ ନିଜ ନାଁ ସିଟରେ ବସିଗଲେ ପରେ ଦେଖିଲି ଶତାଧିକ ସମୁଦ୍ର ଗାମୀ ଜାହାଜ ଲଙ୍ଗର ପକାଇ ରହିଥିଲେ । ଆଉ କେତେକ ଜାହାଜ ଯିବା ଆସିବା କରୁଛନ୍ତି ମନ୍ଦ ମନ୍ଦ ବାୟୁ ପ୍ରବାହିତ ହେଉଥାଏ । ନୀଳ ସମୁଦ୍ରର ତରଙ୍ଗ ଅଳ୍ପ ପ୍ରାୟ ୨ଫୁଟରୁ ୩ଫୁଟ ଉଚ୍ଚତାରେ ଉଠୁଥାଏ । ଚକ୍ଷୁ ମଣ୍ଡଳକୁ ସ୍ପର୍ଶ ଗତି କରୁଥାନ୍ତି । ସମୁଦ୍ରର କେତେ ଗଭୀର ଜଳରେ ଜାହାଜ ସ୍ଥାଣୁଭୂତ ହୋଇ ରହିଛି ଯେ ତାହା ଜାଣି ହେବନାହିଁ । ଜାହାଜର ଚାଳକ କ୍ୟାପଟେନ୍ ୪ଜଣ ନିଜ ନିଜ କାମରେ ବ୍ୟସ୍ତ । ଅନ୍ୟ ଚାରିଜଣ କର୍ମଚାରୀ ମଧ୍ୟ ତାଙ୍କ କାମରେ ଲିପ୍ତ ରହିଥାନ୍ତି ।

ଜାହାଜର ଅଗ୍ରଭାଗରେ ବସିଥାଉଁ ଓ ଯାଇଟ ସିଟ୍‌ରେ ମୁଁ ବସିଲି ସମସ୍ତ ଯାତ୍ରୀ ପ୍ରାୟ ୧୫୦ ହେବେ । ନିୟମ ଅନୁଯାୟୀ ଯଥା ସମୟରେ

ଷାଇରନ୍ ବାଜିଲା । ଅଦଭୂତ ଶବ୍ଦ । ଅପୂର୍ବ ସ୍ୱନ । ଜଣେ ମହିଳା ଉଚ୍ଚା-ରଣ କରୁଛନ୍ତି ମଧୁର କଣ୍ଠର ଗୁଞ୍ଜନା ଭାଷାରେ । କୋକିଳ କଣ୍ଠ ଜଣା ସୁର ଆକାଶର ଅମୃତ ଧାର । ତତ୍ସଙ୍ଗେ ଘଣ୍ଟା ବାଦନ ହେଉଥାଏ । ସମଗ୍ର ଯାତ୍ରୀ ଜନତା କର୍ଣ୍ଣଗ୍ରାହକରି ନିସ୍ତବ୍ଧ । ସୁନ୍ଦର ପରିବେଶ ମଧ୍ୟରେ ନିୟମା-ବଳୀ ବର୍ଣ୍ଣନା କରି ସାରିବା ପରେ ତାହାଙ୍କର ମେସିନ ଶବ୍ଦ ଶୁଭିଲା । କ୍ୟାପଟେନ ଧୀର ଗତିରେ ସମୁଦ୍ର ଆଡ଼କୁ ଜାହାଜ ମୁହାଇଲେ । ପ୍ରଥମେ ସାମାନ୍ୟ ଟଳମଳ ହେଉଥିଲା । ଜାହାଜରେ ବସି ଯାଉଥିବା ସମୟରେ ଆମକୁ ସଙ୍ଗରେ ନେଇଥିବା ଯୁବକ ଦୃଷ୍ଟ, ଆମକୁ ଅନେକ ବିଷୟ ବୁଝାଉ ଥାନ୍ତି । ସମୁଦ୍ର ବକ୍ଷରେ ଗତି କରୁଥିବା ବେଳେ ଦିଶୁଥାଏ ଦ° ଦ° ଦେଶ ପର୍ବତ ମାଳାରେ ଅବସ୍ଥିତ । କିନ୍ତୁ ପର୍ବତ ସଦୃଶ୍ୟ ଦେଖାଯାଉ ନଥିଲା । କେବଳ ଅଟ୍ଟାଳିକା ଉପରକୁ ମୁଣ୍ଡଟେକି ପର୍ବତ ଶିଖର ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ହୋଇ ସ୍ୱର୍ଗପୁରକୁ ଲାଗିଛି ବୋଲି ମନରେ ବିଶ୍ୱାସ ହେବ । ଏହି ପର୍ବତ ଶ୍ରେଣୀ ଦୈର୍ଘ୍ୟତା ଓ କେତେ ମାଇଲ ଲମ୍ବ । ଏହାର ଆୟତନ କେତେ ଏବଂ ଏହାର କ୍ଷେତ୍ରଫଳ କେତେ ବୋଲି ସେ ଯୁବକଙ୍କୁ ପଚାରିଲି । ସେ କହିଲେ ସମଗ୍ର ଦ୍ୱୀପ ଓ ଅନ୍ତରୀପ ସମେତ ୧୫୦ କି:ମି ରୁ ୨୦୦ କି: ମି: ଏବଂ ପ୍ରସ୍ଥ ୫୦ କି:ମି: ରୁ ୧୦୦ କି: ମି. ହୋଇପାରେ ବୋଲି କହିଲେ ।



# ଜାହାଜ ମଧ୍ୟରେ ଦିବ୍ୟ ଚେତନା ଃ—

ଦିନନାଥ ସିନ୍ଦୂର ବର୍ଣ୍ଣ ଧାରଣ କରି ଯାଉଛନ୍ତି ଅସ୍ତାଚଳକୁ ଆଉ ୨୦ମିନିଟ ପରେ ଅଦୃଶ୍ୟ ହୋଇଯିବେ । ଦିଂକ ଚକ୍ର ମାଳାର ମଧ୍ୟଭାଗ, ଭାରତସାଗରସ୍ଥ ଅଞ୍ଚଳର ଜୁଆର ତଥା ସ୍ୱଳ୍ପ ତରଙ୍ଗ ଉପରେ ମନ୍ଦ ମନ୍ଦ ବାୟୁ ପ୍ରବାହିତ ହେଉଥାଏ । କୋଟି କୋଟି ତରଙ୍ଗ ଉଦ୍ବେଳିତ ହୋଇ ଝଲମଲ ଦେଖାଯାଉଥାନ୍ତି ।

ଦିଗନ୍ତ ବିସ୍ତାରୀ ତରଙ୍ଗ ସମୂହ ସିନ୍ଦୂର ରଙ୍ଗ ବର୍ଣ୍ଣ ପାଟଶାଢ଼ୀ ପରିଧାନ କରିଛନ୍ତି ସତେ । ସେ ନିଜ ପ୍ରଭୁଙ୍କୁ ସମବେଦନା ଜ୍ଞାପନ ପୂର୍ବକ କରପତ୍ର ଯୋଡ଼ି ବ୍ୟାକୁଳ ହୃଦୟରେ କହୁଛନ୍ତି ପ୍ରଭୋ ତୁମେ ଅଦୃଶ୍ୟ ହୋଇଗଲେ ଅନ୍ଧକାର ତିମିରରେ ମ୍ରିୟମାଣ ହୋଇ ରହିଯିବୁ । ଆପଣଙ୍କୁ ପୁନର୍ବାର ଆଉ ଦର୍ଶନ କରିବାର ସୌଭାଗ୍ୟ କେବେ ମିଳିପାରିବ କି ? ଏ କରୁଣ ନିବେଦନ ଦେଖି ଭଗବାନ ସୂର୍ଯ୍ୟ କହନ୍ତି ହେ ବାରିଧି ଏ ଜଗତରେ ସେ ପରମ ପିତା ନାରାୟଣ ଙ୍କ ଆଦେଶ ପାଳନ କରିବା ସମସ୍ତଙ୍କର କର୍ତ୍ତବ୍ୟ ଏଣୁ ମୋର କର୍ତ୍ତବ୍ୟ ସମ୍ପାଦନ କରିବାକୁ ଯାଉଅଛି । ପରବର୍ତ୍ତୀ ପର୍ଯ୍ୟାୟରେ ତୁମ ନିକଟକୁ ପୁନଃ ଆଗମନ କରି ଆସିବି ।

ତୁମର ଅନ୍ତଃ କରଣ ଭାବକୁ କେବେ ଭୁଲି ନପାରେଁ । ମୋର ଏ ସୂର୍ଯ୍ୟକାନ୍ତ ମଣି ଓ ମୁକ୍ତାଦି ଅଷ୍ଟରତ୍ନ ତୁମକୁ ପ୍ରଦାନ କରୁଅଛି । ତାହା ତୁମ ହୃଦୟକୁ ଆଲୋକିତ କରି ସମସ୍ତ ପୃଥିବୀକୁ ଆଲୋକିତ କରିବ । ହେ ବାମା-ବାନ୍ଧବୀ ! ରତ୍ନଗର୍ଭା ଭବ ତୁମେ । ତୁମଠାରୁ ମୁଁ ଆଦିମ କାଳରୁ ବିଚ୍ଛେଦ ନୁହେଁ ।

ଏ ପ୍ରାକୃତିକ ଦୃଶ୍ୟ ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟି ଆକର୍ଷିତ ହୋଇ ମୋ ଜୀବନର ଚୈତନ୍ୟ ସମ୍ପୂର୍ଣ୍ଣ ହୋଇ ଉଠିଲା । ମନରୁ ମାୟା, ମମତା ସ୍ମୃତିମାନ ସଙ୍ଗେ ସଙ୍ଗେ ସମସ୍ତ ଚିନ୍ତା ଦୂରୀଭୂତ ହୋଇ ଗଲା । ହେ ପରମ ପିତା ପରମେଶ୍ୱର, ଏ ଜଗତକୁ କେତେ ସୁନ୍ଦର କରି ଗଠନ କରିଅଛ । ତା ମଧ୍ୟରେ ମୁଁ କହିବା ସମ୍ପୂର୍ଣ୍ଣ ଅଜ୍ଞତା । ଅଣୁମାତ୍ରକ ଜୀବ ବୃନ୍ଦ ସ୍ନେହ-ବନ୍ଧନ କରି ପରିପୋଷିତ ହୁଏଁ ! ଏହିଭଳି ଦୂରଦୂରାନ୍ତ ଏ କ୍ଷୁଦ୍ର ପ୍ରାଣୀ କ୍ଷୁଦ୍ର ଶିଳ୍ପୀକୁ ଆଣିଅଛ ପ୍ରଭୋ, ମୋର କାମକୁ ପ୍ରଦର୍ଶିତ କରିବ । ହେ ବିଶ୍ୱନାଥ ବିଶ୍ୱଜୀବନ ତୁମ କରୁଣା ଜାଣିବାକୁ ମୋର କିଛି ଜ୍ଞାନ ନାହିଁ ।

ବୁଡୁଁ ବୁଡୁଁ ସୂର୍ଯ୍ୟ ଅସ୍ତ ହୋଇଗଲେ । ତତ୍‌କ୍ଷଣାତ ମୁଁ ମୋର ପିନ୍ଧିଥିବା ଘଣ୍ଟାକୁ ଦେଖେଁ ଅପରାହ୍ଣ ୩ ଘଣ୍ଟା ସମୟ ହୋଇଅଛି ।

ଫିଲିପାଇନ୍‌ସ ନର୍ଥ ମହାସାଗର ଉପସାଗରସ୍ଥ ଅଞ୍ଚଳ, ଡ଼ି.ଭି. ଓ ସିଲେନ୍ ସମୟ ୭ ଘଣ୍ଟା ହୋଇଛି । ଆମେ ବସିଥିବା ଜାହାଜ ସିଲେନ୍ ସିଟିକୁ ପହଞ୍ଚିଲା । ସେଠାରେ ପ୍ରଥମେ ମାର୍କେଟ କମପ୍ଲେକ୍ସ ମଧ୍ୟକୁ ଭ୍ରମଣ କରିଗଲୁଁ । ବହୁପ୍ରସ୍ଥ ବିଶିଷ୍ଟ ବହୁବିସ୍ତୀର୍ଣ୍ଣ ତଳପ୍ରସ୍ଥ ମାର୍କେଟ କେବଳ ଦେଖି ଦେଖି ବୁଲିଯାଉଥାଉଁ । ଅସଂଖ୍ୟ କୋଠରୀ ମଧ୍ୟରେ ସୁନା ରୂପା ଦୋକାନ ଗୁଡ଼ିକ ଚକ୍‌ଚକ୍ ଦେଖାଯାଉଥାଏ । ବିଭିନ୍ନ ଦୋକାନ ଘଣ୍ଟା କ୍ୟାମେରା ଟି.ଭି. ଟେପରେକର୍ଡର ପ୍ରଭୃତି ଜିନିଷରେ ପରିପୂର୍ଣ୍ଣ । ଯେଉଁ ଆଡ଼େ ଅନାଇଲେ ହମଶୂଲ୍ କୋଠରୀ ତଥା ଏକ ପ୍ରକାର ପଦାର୍ଥ ଭଳି ଲାଗୁଥାଏ । ବୈଚିତ୍ର୍ୟ ବିଦ୍ୟୁତ ଆଲୁଅ ଦେହରେ ଦୀପାଲୋକ ସଦୃଶ୍ୟ । ମାନବର ସମସ୍ତ ଆବଶ୍ୟକ ବସ୍ତୁ ସେ ବଜାରରେ ମିଳିପାରିବ । କେଉଁ ଜିନିଷ କେତେ ପ୍ରକାରେ ସଜାଡ଼ି ରଖିଛନ୍ତି ଯେ ତାହା ସବୁ ନିରୀକ୍ଷଣ କରିବା ସମ୍ଭବ ପର ନୁହେଁ । ଦୃଷ୍ଟି ଆକର୍ଷଣ ହେଲେ ହେଁ ସମୟ ସ୍ୱଳ୍ପ । ସେ ମାର୍କେଟର ତଳ ପ୍ରସ୍ଥରେ ୨୦୦ ରୁ ଅଧିକ କୋଠରୀ । ବହୁପ୍ରସ୍ଥ ବିଶିଷ୍ଟ ସେ ମାର୍କେଟରେ କୋଠରୀ ସହସ୍ରାଧିକ ହେବ ।

ସମୟର ଅଭାବ କାରଣରୁ ତଳ ପ୍ରସ୍ଥରେ ମାତ୍ର ଘଣ୍ଟାଏ ସମୟ ଭ୍ରମଣ କରି ପ୍ରତ୍ୟାବର୍ତ୍ତନର ପ୍ରୟାସୀ ହେବାକୁ ପଡ଼ିଲା । ତର ତର ହୋଇ ବୁଲି ପାର କଲୁଁ, ସେତେବେଳେ ମୋ ଜୀବନଟା କ୍ଳାନ୍ତ ଲାଗୁଥାଏ । ପୂର୍ବ ବର୍ଣ୍ଣିତ ପ୍ରକାରେ ସମୁଦ୍ର ମଧ୍ୟରେ ଜାହାଜ ଧୀରଗତି କରି ଯାଉଥାଏ ।

ଅପୂର୍ବ ଦୃଶ୍ୟଟିଏ ଆକର୍ଷଣ କଲା । ସମଗ୍ର ସଂସାର ତାରକା ମୟ । ଆକାଶ ମଣ୍ଡଳ ତାରକାମୟ ଚତୁର୍ଦ୍ଦିଗକୁ ଦେଖିଲେ ତାରକା ମୟ ଜଳଭାଗ ସମୁଦ୍ର ମଧ୍ୟ ତାରକା ମୟ । କି ଅଦ୍ଭୁତ, ଏ କଣ ହେଲା ବୋଲି ଚନ୍ଦ୍ରତ ହୋଇ ଚେଡ଼ିଲିଁ ।

ସ୍ଥିର ମନରେ ଚାହିଁଲି, ଡାହାଣ ପଟରେ ହଂକଂ ସମୁଦ୍ର ପ୍ରାନ୍ତରୁ ପର୍ବତର ଶିଖର ପର୍ଯ୍ୟନ୍ତ ସବୁଧ କୋଠା ଘର ମାନଙ୍କର ବତି ତାରା ଭଳି ଦିଶୁଛି । ପୂର୍ବ ଓ ବାମ ପଟରେ ଦ୍ୱୀପ ଅନ୍ତଃସ୍ଥ, ମିଲ, କାରଖାନା ଓ ଏଆର ପୋର୍ଟର ବିଦ୍ୟୁତ ବତି ସମୂହ ଆକାଶର ତାରକା ଭଳି ଦିଶୁଅଛି । ଏବଂ ଡକଆଡ୍ରେ ସିଙ୍ଗେନ ସିଟିର ବତି ମଧ୍ୟ ତାରକା ସଦୃଶ୍ୟ । ଚତୁର୍ଦ୍ଦିଗର ବିଦ୍ୟୁତ ବତି ବିକିରଣ ସଙ୍ଗେ ଆକାଶର ତାରକାର ପ୍ରତିବିମ୍ବ ସମୁଦ୍ର ଜଳରେ ଜକ୍ ଜକ୍ ପ୍ରକାଶ କରୁଅଛି ।

ଫେରନ୍ତା ଜାହାଜରେ ଅଳ୍ପ ଯାତ୍ରୀ ଥିଲେ ଧୀର ଗତିରେ କୂଳକୁ ଲାଗିଲା । ସାଥିଗଣଙ୍କ ସଙ୍ଗେ ଆସି ପହଞ୍ଚିଲି ଆମ ବସାକୁ । ମୋ ଘଡ଼ିର ସମୟ ରା: ୮।୪୦ ମିନିଟ ହୋଇଥାଏ ।



## ପ୍ରଦର୍ଶନୀ ଉନ୍ମୋଚନ ଃ--

ମୋର ସମସ୍ତ ବୁଣା ସରଞ୍ଜାମ ବଣ୍ଡଲ ୨ଟାକୁ ଓ ନମୁନା କପଡ଼ା ବାକ୍ସ ଗାଡ଼ିରେ ନେଇ ପ୍ରଦର୍ଶନୀ ମଣ୍ଡପକୁ ପହଞ୍ଚିଲି । ସଜାଇଫିଟ କରିବାକୁ ବଣ୍ଡଲ ଖୋଲି ଦେଲି । ବୁଣାକାମର ମୁଖ୍ୟ ଅଂଶ ମଗାର ଲାଇନ ଖଣ୍ଡଖଣ୍ଡ ହୋଇ ଭାଙ୍ଗି ଯାଇଛି । ତା ମଧ୍ୟ ସଜାଡ଼ିବାର କୌଣସି ଉପାୟ ନାହିଁ । ତାହା ଦେଖି ମୋ ମନରେ ଦୁଃଖ ଜାତ ହେଲା । ସେସନେଟାଗ୍ରି ମିସେସ ଉମା ପ୍ରକାଶ ଆସି ମୋ ନିକଟରେ ପହଞ୍ଚି ଗଲେ । ସେ ମୋ ମନର କଷ୍ଟ ଜାଣି

ତାଙ୍କ କହିଲେ ମେଡେଲ ଜୀ ଆପଣ ଆଉ ଚିନ୍ତା କରିବାର କୌଣସି କାରଣ ନାହିଁ । ଆମାନଙ୍କ କର୍ମଚାରୀ ଓଜନକୁ ନ ସମ୍ଭାଳି କଚଡ଼ି ଦେଇଥିବେ । ତେଣୁ ନଷ୍ଟ ହୋଇଯାଇ ଯାଇଛି । ମୁଁ ଏଥିପାଇଁ କିଛି ବନ୍ଦୋବସ୍ତ କରୁଛି ବୋଲି ଚାଲିଗଲେ ।

ଜଣେ ଜାପାନୀ ମିସ୍ତ୍ରୀ ତାଙ୍କର ଫର୍ମର ସାମାନ ଆଣି ଶୀଘ୍ର ଆସି ଗଲେ । ମଙ୍ଗାର ଲାଇନ ଉପରେ ତ ସାମାନ୍ୟ ଆଞ୍ଚ ଆସିଲେ କାର୍ଯ୍ୟକ୍ଷମ ହୁଏ ନାହିଁ ତାହା ଖଣ୍ଡ ବିଖଣ୍ଡ ହୋଇ ଯାଇଛି ସେଥିରେ କଣ କରିବେ । ସଜାଡ଼ିବା ଉପାୟ ଶୂନ୍ୟ, ସେଥିରେ ଅଠାଲଗାଇ କଣ୍ଟା ପିଟିଲେ । ଫ୍ରେମ ସାମାନ ସମସ୍ତ ନଷ୍ଟ ବ୍ଲକ୍ କରି ଉପିଠ କଲ । ହଟାକୁ ଫ୍ଲାଇ ରଖିଲ ସିନା ଆଉ ସେ ମଙ୍ଗାରେ ଲୁଗା ବୁଣିକରି ଦେଖାଇବା ଆଉ ସମ୍ଭବ ହୁଏ ନାହିଁ । ସେହେତୁ ତାଙ୍କୁ କହିଲେ ମେଡେଲ ଜୀ ଆପଣଙ୍କର ମଙ୍ଗା ଏପରି ଥାଉ । ୨ଦିନ ପାଇଁ ତ । ଆପଣ ଷ୍ଟଲରେ ରଖି ନମୁନା ଗୁଡ଼ିକ ପ୍ରଦର୍ଶିତ କରୁଥାନ୍ତୁ ।

ସେଥିରେ କ୍ଷତିର କାରଣ ହୋଇଥିଲା, ମଙ୍ଗା ସାମାନ୍‌ର ଇନ୍‌ସୁ-ରେନ୍‌ସ ଫର୍ମରେ ଗୋଟିଏ କାରଣ ଭୁଲ ଲେଖା ହୋଇଥିଲା । ସେଥି ସକାଶେ ଗୁରୁତ୍ୱ ନ ଦେଇ ମୋତେ ସାନ୍ତ୍ୱନା ସହକାରେ କହିଲେ, ପ୍ରଦର୍ଶନୀଟା କୌଣସି ପ୍ରକାରେ ଚାଲିଯାଉ । ... ... ...

ପ୍ରଦର୍ଶନୀ ମଣ୍ଡପ ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳ । ସେ ସ୍ଥାନଟା ବିରାଟ ପ୍ରାଙ୍ଗଣ ସମୁଦ୍ର ଉପରେ । ସମୁଦ୍ର ଜଳ ସ୍ତର ତଥା ତରଙ୍ଗ ଉପରେ ସ୍ଲାବ କଂକ୍ରିଟ ପଡ଼ିଛି । ରେଡ଼ି, ଲୁହା ଛଡ ସିମେଣ୍ଟ ଅତଏବ ଅନ୍ୟାନ୍ୟ ଉପାଦାନ ମିଶ୍ରଣ କରି ବୈଜ୍ଞାନିକ ପ୍ରଣାଳୀରେ ପକ୍କା ଚଟାଣ ସ୍ୱରୂପ ବହୁ ବିସ୍ତୀର୍ଣ୍ଣ । ପ୍ରାୟ ଅଧା କିଲୋମିଟର ଲମ୍ବ ଓ ପ୍ରସ୍ଥ ୧ କିଲୋମିଟରର ର ଚତୁର୍ଥାଂଶ ହେବ । ପ୍ରଦର୍ଶନୀ ମଇଦାନ ତା ଉପରେ ଅବସ୍ଥିତ । ସେ ମଇଦାନର ତଳସ୍ଥ ସମୁଦ୍ର ଅନ୍ଧକାରାଚ୍ଛନ୍ନ । ସ୍ଥାନେ ସ୍ଥାନେ ବୈଜ୍ଞାନିକ ପଦ୍ଧତିରେ ମାଛ ଧରିବା ତାଙ୍କର ମୁଖ୍ୟ କାର୍ଯ୍ୟ ହୋଇଥାଏ । ସେ ବିରାଟ ନଗରର କୋଠା ବାଡ଼ି ବସତି ପ୍ରାନ୍ତରୁ ସଂଯୋଗ ହୋଇ ଅଛି ।

ତାହା ଉପରେ ଆଠଟା ମହାଦେଶର ଶିଳ୍ପକଳା ପ୍ରଦର୍ଶନ କରିବା ପାଇଁ ଷ୍ଟଲମାନ ନିର୍ମିତ ହୋଇଅଛି । ପ୍ରଦର୍ଶନୀର ମୁଖଶାଳା ବହୁ ଉଚ୍ଚ ଭାବରେ ଶୋଭା ପାଉଥାଏ । ଚୀନ, ଜାପାନ, ସିଙ୍ଗାପୁର, ଅଷ୍ଟ୍ରେଲିଆ ବାଂଲାଦେଶ, ନେପାଳ ଭାରତ ଓ ହଂ କଂ । ପ୍ରଦର୍ଶନୀ ମଇଦାନର ଚତୁର୍ଦ୍ଦିଗ ଆବରଣ କରାଯାଇ ଷ୍ଟଲ ସମୂହ ସଜ୍ଜିତ ହୋଇଥାଏ । ପ୍ରଥମ ମୁଖଶାଳାର ଡାହାଣ ପଟକୁ ୩ ନମ୍ବର ଷ୍ଟଲ ମୋତେ ମିଳିଥିଲା । ତହିଁରେ ମଙ୍ଗାଶାଳ ସ୍ଥାପନ କରି ଶାଢ଼ୀ, କ୍ଲାଉଜ ଭଳା, ଡ୍ରେସ ମେଟ୍ରିଏଲ ପର୍ଦ୍ଦା, ସମ୍ବଲ ପାଟଶାଢ଼ୀ, ମଠାଶାଢ଼ୀ ଓ ସୂତା ମାସ୍ରାଇଜ ଶାଢ଼ୀ ସମେତ ବିଭିନ୍ନ ନମୁନା ପ୍ରଦର୍ଶନ କଲି । ରଣି ଟଣାଟଣି ଇତ୍ୟାଦି କାମରେ ସହଯୋଗ କରୁଥାନ୍ତି ୨ ଜଣ ଝିଅ । ସେ ହେଉଛନ୍ତି ଆମ ଭାରତୀୟ ଅଫିସରଙ୍କର ଝିଅ । ସମସ୍ତ କାମ ସଜ୍ଜିତ ହେଲା । ମଙ୍ଗାଶାଳ ଦେଖିଲେ ଠିକ ଅଛି ବୋଲି ଭାବିବାକୁ ହେବ ସିନା କିନ୍ତୁ ତାହା ମୋତେ ସନ୍ତୋଷ ଜନକ ମନେ ହେଉ ନଥିଲା ।

ନଭେମ୍ବର ୯ ତାରିଖ ଆଜି ପ୍ରଦର୍ଶନୀ ଉତ୍ସବ ଉଦ୍‌ଘାଟିତ ହେବ ଅପରାହ୍ନ ୫ ଘଟିକା ସମୟରେ । ସେକ୍ରେଟାରୀ ମିସେସ୍ ଉମା ପ୍ରକାଶ ମୋ ଷ୍ଟଲକୁ ଆସି କହିଲେ ମେହେର ଜୀ, ଆପଣ ଯାହା ନମୁନା ଆଣିଛନ୍ତି ତାହା ସବୁ ଠିକ୍ ଭାବରେ ସୁସଜ୍ଜିତ କରି ରଖିଥାନ୍ତୁ । ପ୍ରଦର୍ଶନୀ ଉନ୍ମୋଚନ କରିବାକୁ ଆସିବେ ବ୍ରିଟିସ ମାଡ଼ାମ ଏଲିଜାବେଥ୍ । ସେ ହେଉଛନ୍ତି ବିଲାତର ମହାରାଣୀ । ସେ ନିଶ୍ଚୟ ଆପଣଙ୍କର ଷ୍ଟଲକୁ ଆସିବେ ।

ବହୁବର୍ଷ ପୂର୍ବେ ଚୀନ ଦେଶ ସରକାର ଇଂଲଣ୍ଡ ସରକାରଙ୍କ ଠାରେ ସ୍ୱତନ୍ତ୍ର ହଂ କଂ ଦେଶକୁ 'ମର୍ଟଗେଜ' ବନ୍ଧକ ସୂତ୍ରରେ ଦେଇଛନ୍ତି ତେଣୁ ବ୍ରିଟିସ ଶାସନ ଦ୍ୱାରା ପରିଚାଳିତ ହେଉଛି ଏ ଦେଶ । ସେଥି ସକାଶେ ଇଂଲଣ୍ଡର ରାଣୀ ଏଲିଜାବେଥ୍ ପ୍ରଦର୍ଶନୀ ଉନ୍ମୋଚନ କରି ଆସୁଛନ୍ତି ବୋଲି ମୋତେ ବୁଝାଇଲେ ।



# ରାଣୀ ଏଲିଜାବେଥ୍ ଙ୍କ ଆଗମନ ଓ ପ୍ରଦର୍ଶନୀ ଉଦ୍‌ଘାଟନ ଃ--

ଠିକ ଅପରାହ୍ନ ପରେ ୫ ଘଣ୍ଟା ୧୫ ମିନଟ ସମୟରେ ବହୁତ ଜନ ଗହଳ ହୋଇଥାନ୍ତି । ପ୍ରଦର୍ଶନୀ ଉନ୍ମୋଚନର ଶୁଭ ଲଗ୍ନରେ ପିତା କର୍ତ୍ତିନ କରି ସିଧା ସଳଖ ମୋ ଷ୍ଟଲ୍ ଟାକୁ ଉପଗତ ହେଲେ ସମ୍ରାଜ୍ଞୀ ବ୍ରିଟିସ୍ ରାଣୀ ଏଲିଜାବେଥ୍ । ଆମ ଭାରତୀୟ ସେକ୍ରେଟାରୀ ମିସେସ୍ ବହଲ ଓ ଇମା ପ୍ରକାଶ ସଙ୍ଗେସଙ୍ଗେ ମୋ ଷ୍ଟଲ୍ ଭିତରକୁ ଆସିଗଲେ । ଷ୍ଟଲ୍ ବାହାରେ ବହୁ ଲୋକ ଭିଡ଼ ହୋଇଥାନ୍ତି । କ୍ୟାମେରା ମ୍ୟାନ ଗଣ ଚକ୍ ଚକ୍ କ୍ୟାମେରା ଟିପୁଥାନ୍ତି । ଶ୍ରୀମତୀ ଏଲିଜାବେଥ୍ ପ୍ରତ୍ୟେକ ନମୁନାକୁ ନିରୀକ୍ଷଣ କରି ଦେଖୁଥାନ୍ତି । ଷ୍ଟଲର ମଧ୍ୟଭାଗରେ 'ପ୍ରଭାତରଶ୍ମି' କଳା ରଙ୍ଗର ପାଟଶାଢ଼ୀ ଟଣା ହୋଇଥିବା ରପି ଉପରେ ଝୁଲାଇ ରଖିଥିଲି । ସେ ଶାଢ଼ୀ ଉପରେ ଦୃଷ୍ଟି ପଡ଼ିଲା ଏଲିଜାବେଥ୍‌ଙ୍କର । ସେ ଶାଢ଼ୀକୁ ତାଙ୍କ ସ୍ୱହସ୍ତରେ ତୋଳି ଆଣି ଟେବୁଲ ଉପରେ ପକାଇଲେ । ଶାଢ଼ୀର ଅଞ୍ଚଳରେ ବାଘଚମ ଦେଖି ଇଂରାଜୀ ଭାଷାରେ ମୋତେ ପଚାରିଲେ ଏ କଣ ଓ କାହିଁକି ମୁ ହିନ୍ଦୀ ଭାଷାରେ କହିଲି । ତାହା ଇଂରାଜୀ ଭାଷାରେ ଭାରତୀୟ ମାଡ଼ାମ ହନ୍ସ ବୁଝାଉ ଥାନ୍ତି ।

ମୁଁ ପ୍ରଥମେ କହିଲି ଆମ ଭାରତୀୟ ସଂସ୍କୃତି ବିଧାନ୍ । ଆମ ଓଡ଼ିଶା ରାଜ୍ୟରେ ବହୁ ପ୍ରାଚୀନ କାଳରୁ ସୂର୍ଯ୍ୟ ଦେବତାଙ୍କ ସ୍ଥାପତ୍ୟ ମନ୍ଦିର ରହିଅଛି । ସୂର୍ଯ୍ୟ ଦେବତା ଦକ୍ଷିଣାୟଣୀ ଗତି କରୁଥିବା ସମୟରେ ସେ ମନ୍ଦିରରେ ବିରାଜିତ ହୁଅନ୍ତି । ତେଣୁ ତାହା କୋଣାର୍କ ମନ୍ଦିର ନାମରେ ବିଖ୍ୟାତ । ମନ୍ଦିର ଗାତ୍ରରେ ଏମାନ ସ୍ୱରୂପ ନକ୍ସାର କାରୁକାର୍ଯ୍ୟ ଖୋଦିତ ହୋଇଛି ।

ସେ ସମାନର ଚକକୁ କୋଣାର୍କ ଚକ କହନ୍ତି । ତେଣୁ ଏ ବାନ୍ଧ ଭାମର ଅଧା ଦୃଶ୍ୟ କୋଣାର୍କ ଚକ । ତା ଉପରେ ହାତୀଗଳ । ନାରୀମାନେ ମାର୍ଗଶିର ମାସ ଗୁରୁବାର ଦିନ ଜଗତମାତା ମହାଲକ୍ଷ୍ମୀଙ୍କୁ ପୂଜା କରନ୍ତି । ଲକ୍ଷ୍ମୀ ଦେବୀଙ୍କ ଅତି ପ୍ରିୟ ବାହନ ହସ୍ତୀ ଏବଂ ସ୍ୱର୍ଗପୁର ଇନ୍ଦ୍ରରାଜାଙ୍କ ବାହନ ଐରାବତ ହସ୍ତୀ । ତେଣୁ ସୁଲକ୍ଷଣୀ ନାରୀମାନଙ୍କର କମନୀୟ ତଥା ନମନୀୟ ପଦଚଳନା ସକାଶେ ନାରୀମାନଙ୍କୁ ଗଜଗମନା ଆଖ୍ୟାରେ ନାମିତ କରି ହୋଇଅଛି । ଏ ବିବରଣୀକୁ ମୁଁ ହିନ୍ଦିଭାଷାରେ କହୁଥାଏଁ ମାଡାମ ହୟ ଇଂରାଜୀରେ ବୁଝାଇବା ଫଳରେ ଶ୍ରୀମତୀ ଏଲିଜାବେଥ୍ ମନ୍ଦ ମନ୍ଦ ହସୁଥାନ୍ତି । ତାଙ୍କମନ ଅତି ଆନନ୍ଦିତ ହୋଇ ଯାଉଥାଏ ।

ପୁଣି ସେ ଶାଢୀ ଦେହର ବାନ୍ଧ ଚିତ୍ର ଦେଖି ପଚାରିଲେ, ଏ କଣ ମୁଁ କହିଲି, ମାନବର ଯେତେବେଳେ ପୁତ୍ର କନ୍ୟା ଜନ୍ମ ହୁଅନ୍ତି, ସେ ପିତା ମାତା ଶିଶୁ ସନ୍ତାନର ମଙ୍ଗଳ କାମନାର୍ଥେ ବ୍ରତୀ ହୋଇ ଈଶ୍ୱରଙ୍କୁ ଆରାଧନା କରୁଥାନ୍ତି । ଏହିମୋର ସନ୍ତାନ ଦୀର୍ଘାୟୁ ହେଉ । ବିଦ୍ୟା ବୁଦ୍ଧି ଓ ଜ୍ଞାନ ଆହରଣ କରି ଏପରି ଉର୍ଦ୍ଧଗାମୀ ହେଉ ବୋଲି ଆଶୀର୍ବାଦ କରନ୍ତି । ଏଣୁ ଏ ବାଳକ ଗଣ ବିଦ୍ୟା ବୁଦ୍ଧି ଓ ଜ୍ଞାନ ବଳରେ ଦେବ ଲୋକକୁ ଗତି କରୁଛନ୍ତି । ଆମର ଏ ଭାରତୀୟ ସଂସ୍କୃତି ଶୁଣି ରାଣୀ ଏଲିଜାବେଥ୍ଙ୍କର ମନ ଆପ୍ୟାୟିତ ହୋଇଉଠିଲା । ତତ୍କ୍ଷଣାତ ଭାରତୀୟ ମାଡ଼ାମ ହୟଙ୍କୁ ସେ କହିଲେ ଏ ଶାଢୀ ମୋତେ ପିନ୍ଧାଇ ଦିଅ । ତାଙ୍କର ପିନ୍ଧିଥିବା ଡ୍ରେସ ଉପରେ ଓଢଣା ଦେଇ ପିନ୍ଧାଇ ଦେଲେ । ଉଲ୍ଲସିତ ମନରେ ଅଳ୍ପ ଅଳ୍ପ ହସୁଥାନ୍ତି ଏଲିଜାବେଥ୍ । କ୍ୟାମେରା ଚାଳକ ଙ୍କୁ ଇଙ୍ଗିତରେ କହିଲେ ଫଟୋ କର । ମୋ ସ୍କନ୍ଧକୁ ଛୁଇଁ କହିଲେ ନିକଟରେ ଛିଡ଼ାହୁଅ । ଆଗପଟରୁ ପଛ ପଟରୁ ବାମ ଓ ଡାହାଣ ପଟରୁ ଫଟୋ କର ବୋଲି ଆଦେଶ ଦେଉଥାନ୍ତି । ଷ୍ଟଲଭିତରୁ ବାହାରି ପଡ଼ି ଲୋକାରଣ୍ୟ ଭିତରକୁ ଚାଲିଗଲେ । ଚତୁର୍ଦ୍ଦିଗରୁ ଫଟୋ କରୁଥାନ୍ତି କ୍ୟାମେରା ଚାଳକ ମାନେ । ସହସ୍ରାଧିକ ଜନତା ରୁଣ୍ଡ ହୋଇ ଏ ଅଦଭୁତ ଦୃଶ୍ୟ ଦେଖୁଥାନ୍ତି । ତତ୍ପରେ ଫେରି ଆସି ଉପସ୍ଥିତ ହେଲେ ଷ୍ଟଲ ଭିତରେ । ମାଡ଼ାମହୟଙ୍କୁ କହିଲେ ଶାଢୀ ଖୋଲିଦିଅ । ତତ୍କାଳରେ ଲସିପଡ଼ ସେ ଶାଢୀ ଚଉତା କରିବା ପାଇଁ ମୋତେ ଆଦେଶ ଦେଲେ । ଆଉ ଗୋଟିଏ ପାଟଶାଢୀ ମନୋନୀତ କରି ଏଲିଜାବେଥ୍ ମୋତେ କହିଲେ [ ଥ୍ୟାଙ୍କସ ] ଧନ୍ୟବାଦ । ମୂଲ୍ୟ ପଚାରିବାରୁ ମୁ କହିଲି

ପଟଚିତ୍ର ଶାଢ଼ୀର ମୂଲ୍ୟ ଟ ୬୦୦୦ ଙ୍କା ଓ ବିଭିନ୍ନ ଶାଢ଼ୀର ମୂଲ୍ୟ ଟ ୩୦୦୦ ଙ୍କା, ତାଙ୍କ ଷ୍ଟେଟ ବ୍ୟାଙ୍କରୁ ବ୍ୟାଙ୍କ ଚେକ ବାହାର କରି ଟ ୯୦୦୦ ଙ୍କାର ଡି° ନଂ ଚେକ ସଙ୍ଗେ ସଙ୍ଗେ ମୋତେ ଦେଇ ଦେଲେ । ଅତ୍ୟନ୍ତ ଶ୍ରଦ୍ଧାରେ ମୋ ଠାରୁ ଶାଢ଼ୀ ୨ଖଣ୍ଡ ନେଇ ମୋର ଭିଜିଟିଂ କାର୍ଡ଼ ମୋ ଠାରୁ ନେଇ ହାତକୁ ହାତ ମିଳାଇ ତଥା କୃତଜ୍ଞତା ଜଣାଇ ବିଦାୟ ନେଲେ ।

ପ୍ରଦର୍ଶନୀର ଅସଂଖ୍ୟ ଜନତା ଲୁଣ୍ଡ ହୋଇ ଦେଖୁଥାନ୍ତି । କେତେ ତାଙ୍କ ରାଜଧାନୀର ଇଂରେଜ ଲୋକମାନେ । କେତେ ଅଫିସର କିଏ କେଉଁ ଠାରୁ ଆସିଥାନ୍ତି ତାହା ଜାଣିବ କିଏ ? କେତେ ବିଦେଶର ଲୋକମାନେ । ମୁଁ କିଛି ଚିନ୍ତା କରି ପାରୁ ନଥିଲି । କେବଳ ସ୍ତବ୍ଧ ହୋଇ ରହୁଥାଏଁ ।

ଇଂଲଣ୍ଡର ରାଣୀ ଏଲିଜାବେଥ୍ ପ୍ରଦର୍ଶନୀ ଉଦ୍‌ଘାଟନ କରି ସର୍ବ ପ୍ରଥମେ ଏ ସାମାନ୍ୟ ଷ୍ଟଲ ଭିତରକୁ ଆସି ଏତେ ଶ୍ରଦ୍ଧା ପ୍ରଦର୍ଶନ କରିବେ ତଥା ଆମ ଭାରତୀୟ ହସ୍ତତନ୍ତ ବାନ୍ଧ କଳାରେ ଆକୃଷ୍ଟ ହେବେ ବୋଲି ମୋ ମନରେ କେବେ ଭାବି ନଥିଲି ।



# ହସ୍ତତନ୍ତ ବାନ୍ଧକଳାର ଗୌରବ ପ୍ରଚାର-

ପ୍ରଦର୍ଶନୀ ମଣ୍ଡପକୁ ବହୁ ଦେଶରୁ ଦର୍ଶକ ଗଣ ହସ୍ତତନ୍ତ ବାନ୍ଧ ଶିଳ୍ପର ମହତ୍ତ୍ୱ ବୁଝିବାକୁ ଆସନ୍ତି । ହସ୍ତପଦ ଚାଳିତ ଲୁଗାବୁଣା ଦେଖିବା ପାଇଁ କ ଆଗ୍ରହ ପ୍ରକାଶ କରୁଥାନ୍ତି । କିନ୍ତୁ ମୋର ମଙ୍ଗାର ସମ୍ବାଦ ଶଙ୍କି ଯଡ଼ିବା ସକାଶେ ମୁଁ ବୁଣାକାମ କରିପାରୁ ନଥିଲି । କେତେବେଳେ ଅଳ୍ପ ସମୟ ବାନ୍ଧ କାମ କରେଁ କିନ୍ତୁ ସମୟ ଅଭାବ ହୋଇପଡେ । ମୋର ପରମ କର୍ତ୍ତବ୍ୟରେ ଅବହେଳା ନକରି କଳାର ତତ୍ତ୍ୱ ଓଡ଼ିଶାର ସମ୍ବଲପୁରୀ ଶାଢୀର ଗୌରବ, ତଥା ପୂର୍ବ ପରମ୍ପରାର, ଐତିହାସିକ ମହତ୍ତ୍ୱ ବର୍ଣ୍ଣନା କରି ବୁଝାଇବାରେ ସର୍ବଦା ଚେଷ୍ଟିତ ହୋଇ ରହୁଥାଏ ।

ଦର୍ଶକ ବୃନ୍ଦ ଶୁଣିବାକୁ ଆଗ୍ରହ ପ୍ରକାଶ କରୁଥାନ୍ତି । ମାଡ଼ାମ୍ ମାନେ ସେ ଅବସରରେ ପ୍ରାଞ୍ଜଳ ଭାବରେ ଇଂରାଜୀ ଭାଷା କହି ମୋ କଳା-ପ୍ରେମୀ ଜନତାଙ୍କୁ ଆପ୍ୟାୟିତ କରୁଥାନ୍ତି ।

ବାଂଲାଦେଶରୁ ଆସିଥିଲେ ରଫିକ ମହମ୍ମଦ ନାମକ ଜଣେ ହସ୍ତତନ୍ତଶିଳ୍ପୀ । ମୋଷ୍ଟଲର ଡାହାଣ ପଟକୁ ତାଙ୍କର ୪ନମ୍ବର ଷ୍ଟଲ ରହିଥିଲା । ସେ ମୋତେ ସ୍ୱର୍ଣ୍ଣ ବୋଲି ଡାକନ୍ତି । ତାଙ୍କର ବୁଣା ଶାଳ ବହୁତ ବଡ଼ ଓ ବିସ୍ତୀର୍ଣ୍ଣ ହୋଇଥାଏ । ତାଙ୍କ ତନ୍ତରେ ଜାକେଟ ମେସିନ ଖଞ୍ଜା ହୋଇ ବିଭିନ୍ନ ଯନ୍ତ୍ରରେ ପରିପୂର୍ଣ୍ଣ । ସେ ବୁଣିବା ଅବସରରେ, ଗୋଟିଏ ଖିଅ ବୁଣି-ଦେଲା ମାତ୍ରକେ ବହୁତ ଯନ୍ତ୍ର ଝୁମ୍ ଝୁମ୍ ଶବ୍ଦ କରି ଚାଲୁଥାଏ । ସେଠାରେ ମଧ୍ୟ ଦର୍ଶକ ବୃନ୍ଦ ରୁଣ୍ଡ ହୋଇ ଦେଖନ୍ତି । ସେସବୁ ତାଙ୍କର ଉତ୍ତାଳ କାମ ।

ଦର୍ଶକ ଗଣ ହାତରେ ଲୁଗାକୁ ଧରି ଉଜ୍ଜ୍ୱଳ କାମର ଚନ୍ଦ୍ର କଳାକୁ ଉଲଟ ପାଲଟ କରି ଦେଖନ୍ତି । ଉପର ପଟରେ ଉଜ୍ଜ୍ୱଳ ଫୁଲ ଇତ୍ୟାଦି ଚକ୍ ଚକ୍ କରେ ଓ ତଳପଟରେ ରଙ୍ଗ୍ ମଳିନ ଦେଖାଯାଏ । ତାହାକୁ ହାତରେ ସ୍ପର୍ଶ କରନ୍ତି ଯେ ମୋଟା ଫୁଲକ ଖସର ଲାଗେ । ତେଣୁ ପ୍ରଶ୍ନ କରନ୍ତି ବିଭିନ୍ନ ପ୍ରକାର । ସେ ରଫିକ୍ ମହମ୍ମଦ ତାଙ୍କର କଳା ର ଭାବ ଧାରା ବୁଝାଇଥାନ୍ତି ।

ନିକଟରେ ମୋ ଷ୍ଟଲ ନମ୍ବର ସଲଗ୍ନ ହୋଇଥାଏ । ମୋ ମଙ୍ଗାତ ଅଚଳ ଅବସ୍ଥାରେ ପଡ଼ିରହିଛି । ତେଣୁ ପ୍ରଦର୍ଶିତ ହୋଇଥିବା ନମୁନା ସବୁକୁ ଦେଖି ଚାହିଁରହନ୍ତି । ଏ ସାଧାରଣ ବୁଣା ଶାଳରେ ଏପରି ଡ଼ିଜାଇନ୍ କିପରି ବୁଣାହେଲା । ବାନ୍ଧ କାମର ମହତ୍ତ୍ୱ ଜାଣିନଥାନ୍ତି । ଶାଢ଼ୀ ଇତ୍ୟାଦିର ନମୁନା ଦେଖି ଓଲଟ ପାଲଟ କରନ୍ତି । ହାତରେ ସ୍ପର୍ଶ କରନ୍ତି ମୋଟା କ ପତଳା ବାନ୍ଧକାମ ଉପରେ ହୋଇଛି । ତହିଁରେ ତାଙ୍କର ହୃଦବୋଧ ହୁଏ । ଇଏସ୍ ବୋଥ୍ ସାଇଡ୍ ସେମ୍ କହନ୍ତି । ଗାଢ ନିରୀକ୍ଷଣ କରନ୍ତି, ରଙ୍ଗ କିପରି କରାଗଲା, ବାନ୍ଧ କ'ଣ, ପ୍ରଶ୍ନ କରନ୍ତି । ତାଙ୍କର ପ୍ରଶ୍ନର ଉତ୍ତର ଦେବାକୁ ହୁଏ । ସୁତା ଉପରେ ପ୍ରଥମେ ବାନ୍ଧ ବାନ୍ଧି ରଙ୍ଗ କରାଯାଏ । ସେ ବାନ୍ଧକୁ ତନ୍ତରେ ବୁଣାହୁଏ । ବାନ୍ଧ ସୂତା ବୁଣାଯାଉଥିବା ସମୟରେ ତାର ପ୍ରକୃତ ରୂପ ଫୁଟି ଉଠୁଥାଏ ।

ଚୀନ ଦେଶର ହେଣ୍ଡି ସ୍ଟାଫ୍ ଅଫିସର ଓ ମେଜର ସାହେବ ଉପସ୍ଥିତ ହେଲେ । ତାଙ୍କ ସଙ୍ଗରେ ଆସିଲେ ସ୍ୱରାଷ୍ଟ୍ର ଅମାତ୍ୟ ବହଳ । ସେ ପ୍ରଶ୍ନ କଲେ ହସ୍ତତନ୍ତ ଶିଳ୍ପର ବାନ୍ଧ କଳା ଯାହା କହୁଛନ୍ତି ଆପଣ, ତାହା କେଉଁଠା ଓ ତାହା କପରି ନିର୍ମାଣ କରାଯାଏ ।

ମୁଁ କହିଲି, ଏ ବାନ୍ଧକାମ ପ୍ରାଚୀନ କାଳର କଳାକୃତି । ଆଜି ସମଗ୍ର ପୃଥିବୀରେ ପ୍ରସିଦ୍ଧି ଲାଭ କରିଛି । ସୂତାକୁ ପ୍ରଥମେ ବାନ୍ଧକାମ କରି ରଙ୍ଗାଯାଇ ଥାଏ । ତନ୍ତ ଦେହରେ ବୁଣା ସମୟରେ ବୁଣା ହେଉଥାଏ । ସେ କହିଲେ ପ୍ରିଣ୍ଟ ହେଲା ଭଳି ନା ? ମୁଁ କହିଲି, ଛାପିଦିଆ କପଡ଼ା କୃତ୍ରିମ ପ୍ରାକୃତିକ ନୁହେଁ । ଗୋଟିଏ ଗଛରେ କାଗଜର ଫୁଲ ଖଞ୍ଜା ହେବା ଓ ପ୍ରକୃତରେ ଗଛ ପଲ୍ଲବିତ ହୋଇ ତା ଦେହରୁ ପୁଷ୍ପ ବିକଶିତ ହୋଇ ସୁଗନ୍ଧ ବିତରଣ କରିବା ମଧ୍ୟରେ ପାର୍ଥକ୍ୟ କେତେ ଯେ, ଆପଣ ନିଜେ ବିଚାର କରନ୍ତୁ ।

ସେ କହିଲେ ଆମକୁ ଟିକିଏ ବାଉଁଶର ପ୍ରଣାଳୀ ବୁଝାନ୍ତୁ ।

ମୁଁ କହିଲି, ପ୍ରଥମେ ସୂତାକୁ କପଡ଼ାର ଦୈର୍ଘ୍ୟର ପରିମିତ ଯନ୍ତ୍ରରେ ଚଢାଇ ଟାଣ କରାଯାଏ । ଜ୍ୟାମିତ ଧାର ଅନୁରୂପେ ସଂଖ୍ୟା କରି ସୂତା ଗିଅ କେସକୁ ଡ଼ିଜାଇନ୍‌ର ନକ୍‌ସା ଆକାରରେ ବନ୍ଧାହୁଏ । ବାନ୍ଧଯାଇ ଭିନ୍ନ ରଙ୍ଗ କରି ଗଣ୍ଠି ଖୋଲାଯାଏ । ତହିଁରୁ ସୂତା ଗିଅ ତାହାର ଠିକ ଚିହ୍ନ ଉପରେ ବୁଣା ଯାଉଥିଲେ ତା ପ୍ରକୃତ ନକ୍‌ସାରେ ଛବି ପଡ଼ିଥାଏ । ହସ୍ତତନ୍ତ ବାନ୍ଧ ବସ୍ତ୍ର କଳାପୂର୍ଣ୍ଣ ତଥା ମନକୁ ଆକର୍ଷଣ କରିଥାଏ । କାର୍ପାସ ବସ୍ତ୍ର ସ୍ୱାସ୍ଥ୍ୟ କାରକ ଓ ଆମୋଦ ଦାୟକ ତଥା ଦୀର୍ଘସ୍ଥାୟୀ । ଏଣୁ ଏ ବାନ୍ଧ କଳାର ବସ୍ତ୍ର କେବଳ ଭାରତ ନୁହେଁ, ସମସ୍ତ ପୃଥିବୀରେ ଆଦୃତ ହୋଇଅଛି ।

ଏ ବିଷୟ ସଂକ୍ଷେପରେ ବୁଝାଇଲି । ସେ ଯାହା ବୁଝିଲେ ନା ଜାଣିନି ଏତିକିରେ ତାଙ୍କର ଅଭିଜ୍ଞତା ପ୍ରକାଶ ପାଇଲା । ସେ ବସ୍ତିତରେ ଓ କଣ୍ଢେଇ ଇଣ୍ଡିଆରେ ଏମିତି କୋଉ ଭଣ୍ଡାର ଅଛି ବୋଲି ଆମେ ଶୁଣିଅଛୁ କହି ମୋଠାରୁ ଭିଜିଟିଙ୍ଗ କାର୍ଡ଼ ନେଇ ବିଶେଷ ଧନ୍ୟବାଦ ଦେଇ ବିଦାୟ ନେଲେ ।

ସେ ମାଡ଼ାମ ମାନେ ଉଭୟଙ୍କର ଭାଷା ଭାବକୁ ବୁଝି, ବୁଝାଇବା କମ୍ କଥା ନୁହେଁ । ଧନ୍ୟ ତାଙ୍କର ଜ୍ଞାନ ଓ ବାକ୍ ଶକ୍ତି । ଆଜି ସକାଳେ ନିତ୍ୟକର୍ମ ସାରି ଚା ପାନ ଓ ଜଳଯୋଗ ସମୟ, ମୋର ପ୍ଲାଷ୍ଟିକ ବ୍ୟାଗରୁ ବାହାର କଲି ଚୂଡ଼ା ଓ ଭେଲିଗୁଡ଼ । ମୋ ଶୋଇବା ବିଛଣାରେ ବସିଥାନ୍ତି ପାକିସ୍ତାନୀ ଯୁବକ ଓ ଜାପାନୀ ଯୁବକ । ତାଙ୍କ ହାତରେ ଚୂଡ଼ା ମୁଠାଏ ମୁଠାଏ ଓ ତହିଁରେ ଭେଲି ଭେଲିଗୁଡ଼ ଦୁଇ ଦୁଇ ଢେଲା । ସେ ମୋ ମୁହଁକୁ ଅନାଇଥାନ୍ତି, ଖାଆନ୍ତୁ କହିଲି । ସେ ଯୁବକ ହସୁ ହସିଉଠିଲେ ଆମ ଦେଶର ଖାଦ୍ୟ ବୋଲି ଶୁଣାଇଲି । ସେ କଷ୍ଟେ ମଷ୍ଟେ କରି ଅଳ୍ପ ଚୂଡ଼ା ପାଟିରେ ପକାଇଲେ । କେବଳ ଚୂଡ଼ା ଖାଇ ଓଃ କରି ପ୍ରଶଂସା କଲେ ।

ପୁଣି କହିଲି ଚୂଡ଼ାଗୁଡ଼ ମିଶାଇ ଖାଆନ୍ତୁ । ପାଟିରେ ପଡ଼ିଲେ ଭେଲିଗୁଡ଼ କି ଆଶ୍ଚର୍ଯ୍ୟ ଆନନ୍ଦ ଉଲ୍ଲାସ ପ୍ରକାଶ ପାଇଲା ତାଙ୍କର । ସମସ୍ତେ ଆମେ ୭ଜଣ, ଏକାଠି ହୋଇ ବଡ଼ ଆନନ୍ଦରେ ଚୂଡ଼ାଗୁଡ଼ ଭୋଜନ କଲୁଁ ।

ସେ କୌତୁହଳ ମଜାରେ କହିଉଠିଲେ ଏଇଟା କି ଫଳ । ଏହାର କପରି ଗଛ ଓ କଉଣ ଫଳ ଫଳେ । ଧାନ ଗଛରୁ ଚାଉଳ ତ୍ୱ ଓ କୁସେର ଗଛରୁ ଭେଲିଗୁଡ଼ । ମୁ ତାଙ୍କୁ ଧନ୍ଦାରେ ନ ପକାଇ ସିଧା ସଳଖ କହିଲି । ଆମ ଦେଶର ଏ ହେଉଛି ଅମୃତ ତୁଲ୍ୟ ଗୁଡ଼ ମଧୁର । ଦେବ ପୂଜା ପୁଣ୍ୟପର୍ବରେ ମଧ୍ୟ ଭୋଗ ଲାଗେ । ପୂଜ୍ୟ ଦ୍ୱିଜଙ୍କ ଶବାଦ ପୂର୍ବରୁ ପ୍ରଥମେ ଗୁଡ଼ ଚୂଡ଼ା ନଡ଼ିଆ ନର୍ବଦ କରି ପରିବେଷଣ କରନ୍ତିଏ । ପ୍ରତିଦିନ ଅମେ ଖାଉଁ । ଘରଷ୍ଟସୂ ବନ୍ଧୁ ଗୃହିଜଣ ଧ୍ୟାନଦେଇ ଶୁଣୁଥାନ୍ତି । ଚୂଡ଼ାକୁ ଚିହ୍ନିଲେ କିନ୍ତୁ ଆମ ବରପାଲି ବଜାରର ଭେଲିଗୁଡ଼ ଦେଖି ନ ଥିଲେ । ସେ କହିଲେ ଯାଏଙ୍କେ ଦମ୍ ସମ୍ବଲପୁର, ଖାଏଙ୍କେ ଦମ୍ ଚୂଡ଼ାଗୁଡ଼ । ତତ୍‌ପରେ ମୋତେ କହିବାକୁ ଲାଗିଲେ । ଦମାସ ଭେଲିଗୁଡ଼ ସେ ଇତ୍‌ନା, ତୋ ଦମାସ ଶିଳ୍ପ କଳା ସେ କିତ୍‌ନା । ଶୋଭଏ ଅପ୍ ।

ପରବର୍ତ୍ତି ଦିନ ତାଙ୍କ ଜଣ ଏକାଠି ହୋଇ ମୋଷ୍ଟେଲରେ ଉପସ୍ଥିତ ହେଲେ । ୨ଜଣ ଜାପାନ ବ୍ୟକ୍ତି ଅନୁଭବକଲି । ହସ୍ତତନ୍ତ ବାନ୍ଧକଳାର ତାତ୍ପର୍ଯ୍ୟ ପଚାରିଲେ । ଏ ସମ୍ପର୍କରେ କହୁଥିବା ବେଳେ ବହୁ ଜନତା ରୁଣ୍ଡ ହୋଇଯାଉଥାନ୍ତି ।

ମୁ କହିଲି ଆମ ଭାରତବର୍ଷର ଓଡ଼ିଶା ରାଜ୍ୟ କଳା ଓ ସଂସ୍କୃତିର ଭଣ୍ଡାର । ବହୁ ପ୍ରାଚୀନ କାଳରୁ ଆମର ଏ ହସ୍ତତନ୍ତ ବସ୍ତ୍ରବୟନ ବାନ୍ଧକଳା ପ୍ରଚଳିତ ହୋଇ ଆସୁଛି । ଯେଉଁ ଯୁଗରେ ପ୍ରଥମେ ବସ୍ତ୍ରବୟନ ଉତ୍ପତ୍ତି ହେଲା, ସେ କାଳରୁ ବାନ୍ଧ ରଙ୍ଗ କରି ଆମର ପ୍ରାଚୀନ ପରମ୍ପରାର ଏ କଳା କୃତିକୁ ଅମେ ସୁଦୃଢ଼ ଭାବରେ କରି ଅସୁଅଛୁଁ । ବାନ୍ଧକଳାର ମହତ୍ତ୍ୱ ସମଗ୍ର ପୃଥିବୀରେ ଆଦୃତ ହୋଇଅଛି । ଆଜି ଯୁଗରେ ତାହା ଗବେଷଣା କରି ସୁଷ୍ଠୁ ସୂକ୍ଷ୍ମ କାର୍ଯ୍ୟକରି ଭବିଷ୍ୟ ସଂସ୍କୃତିର ପରିପ୍ରକାଶ କରୁଅଛୁଁ ।

ସେ ଦର୍ଶକ ଗଣଙ୍କ ମଧ୍ୟରୁ ଦୃଢ଼ ଜିଜ୍ଞାସୁ ଓ କଳା ପ୍ରେମୀ ବ୍ୟକ୍ତି ୨ଜଣଙ୍କର ମନ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଉଥାଏ । ସେ କହିଲେ, ଆମେ ଭାରତକୁ ଗଲେ ଆପଣଙ୍କ ଓଡ଼ିଶା ରାଜ୍ୟ ସମ୍ବଲପୁରର ବରପାଲିକୁ ଯାଇ ଅପଣଙ୍କ ଠାରେ ନିଶ୍ଚୟ ଦେଖା କରିବୁ । ମୋଠାରୁ ଠିକଣା ଲେଖି ରଖିଲେ ଓ ମୋଠାରୁ ଭିଜିଟିଙ୍ଗକାର୍ଡ଼ ନେଲେ ।

ଆଠଟି ମହାଦେଶର ଶିଳ୍ପୀ ଗଣ ଭ୍ରାତୃ ଭାବନେଇ ହୋଷ୍ଟେଲକୁ ଯଥା ସମୟରେ ଆସୁଥାନ୍ତି । ମୋଠାରୁ ଅଳ୍ପ ବୟସ୍କ ବ୍ୟକ୍ତି ଯେଉଁ ଦେଶର, ଯେଉଁ ଭାଷାଭାଷୀ ହେଲେ ମଧ୍ୟ ଶ୍ରଦ୍ଧା ପୂର୍ଣ୍ଣ ବାତାବରଣ ମଧ୍ୟରେ ଦାଦା, ବୁଢ଼ା କହୁଥାନ୍ତି । ତାଙ୍କର ସ୍ନେହ ବନ୍ଧନରେ ନିଜ ବାସସ୍ଥାନ ବରପାଲି ସଦୃଶ ମୋତେ ଲାଗୁଥାଏ । ମନେ ମନେ ସ୍ମରଣ କରେ ହେ ପ୍ରଭୁ ଜଗନ୍ନାଥ, ତୁମର ଅଦ୍ଭୁତ ଲୀଳା ।

ଠିଆ ହୋଇ ପ୍ରଦର୍ଶିତ କରିଥିବା ନମୁନା ସମୂହର ତାତ୍ପର୍ଯ୍ୟ ବିଷୟ ବିବରଣୀ ସହ ମୁଁ କହୁଥାଏ । ପ୍ରତ୍ୟେକ ନମୁନାର ଐତିହାସିକ ବିବରଣୀ ଏକାଥରକୁ ତ କହିହେବ ନାହିଁ । ସେ ଦର୍ଶକ ବୃନ୍ଦ ଯେଉଁ ନମୁନାରେ ଆକୃଷ୍ଟ ହୋଇ ମୋତେ ପଚାରନ୍ତି, ତାହା ଆମ ଭାରତୀୟ ସଂସ୍କୃତି ଉପରେ ଆଧାରିତ ହୋଇଥିବା ହେତୁ ବିଷୟ ବସ୍ତୁକୁ ବିଶଦ ଭାବରେ ବର୍ଣ୍ଣନା କରି ବୁଝାଉଥାଏ ।

ସେ ଦର୍ଶକମାନଙ୍କ ମଧ୍ୟରେ ଯେଉଁମାନେ କଳା ପ୍ରେମୀ ତଥା ସଂସ୍କୃତିର ଜିଜ୍ଞାସୁ, ତାଙ୍କର ଦୃଷ୍ଟିଭଙ୍ଗୀ ଦେଖିବାକୁ ହେଲେ ବିଭିନ୍ନ ପ୍ରକାର । କିନ୍ତୁ ବିଭିନ୍ନ ଦେଶର ନାନା ପ୍ରକାରର ଚାଲିଚଳନ ଭାଷାଭାବ ସଙ୍ଗେ ସଙ୍ଗେ ଗୀତ ନୀତିର ପ୍ରଭେଦ ଥିଲେହେଁ ସମସ୍ତଙ୍କ ଶିଷ୍ଟାଚାର ଓ ସଦ୍ଭାବ ସମଗ୍ର ପୃଥିବୀରେ ସମାନ । ଏପରି ମୋର ମନେ ହେଉଥାଏ । ତାଙ୍କର ନମ୍ର ଭାଷା ଶାନ୍ତ ଶିଷ୍ଟ ଭଙ୍ଗୀ, ମନ୍ଦହାସ, ହସ୍ତମିଳନ, ଆଲିଙ୍ଗନ ତଥା ନତମସ୍ତକରେ ଧନ୍ୟବାଦ ଅର୍ପଣ ଆଦି ଅବକାଶ ସମୟରେ ମୁଁ ହୃଦୟଙ୍ଗମ କରି ଆନନ୍ଦ ଉଲ୍ଲାସ ଅନୁଭବ କରି ବିସ୍ମୟାଭିଭୂତ ହୋଇପଡୁଥାଏ ।

ଉକ୍ତ ପ୍ରଦର୍ଶନୀରେ ବିଶେଷ କରି ସମଗ୍ର ପୃଥିବୀର ଲୋକଙ୍କ ମଧ୍ୟରୁ ଦେଖା ଯାଉଥାନ୍ତି ଚୀନ, ଜାପାନ, ବାଂଲାଦେଶ ଓ ଇଂଲଣ୍ଡର ଲୋକ । ଦର୍ଶକ ଗଣ ତାଙ୍କର ଆଗ୍ରହ ତଥା ଆବଶ୍ୟକ ଅନୁରୂପେ ଗୋଟିଏ ଗୋଟିଏ ନମୁନା ଓ ଶାଢ଼ୀ ଇତ୍ୟାଦି କ୍ରୟ କରି ନେଉଥାନ୍ତି ।

ଯେଉଁ ଦେଶରେ ପ୍ରଦର୍ଶନୀ ହୁଏ ସେ ଦେଶ ସରକାରଙ୍କର ତତ୍ତ୍ୱାବଧାନରେ ଅନୁଷ୍ଠିତ ହୋଇଥାଏ । ବିଭିନ୍ନ ଦେଶର ଶିଳ୍ପକଳା ସଙ୍ଗେ ସଙ୍ଗେ ବିଶିଷ୍ଟ ଶିଳ୍ପୀ ମାନଙ୍କୁ ଆମନ୍ତ୍ରଣ କରିଥାନ୍ତି । ଶିଳ୍ପକଳା ଓ ଶିଳ୍ପୀଙ୍କୁ

ଯେଉଁ ଦେଶରୁ ଆହ୍ୱାନ କରାଯାଇଥାଏ ସେ ଦେଶର ସରକାରଙ୍କ ମଧ୍ୟ ସହମତ ଓ ସହଯୋଗ ରହିଥାଏ । ପୃଥିବୀର ବିଭିନ୍ନ ଦେଶରୁ ଦର୍ଶକ ବୃନ୍ଦ ଅନୁଧ୍ୟାନ କରି ଯାଉଥାନ୍ତି । ଉକ୍ତ ଅନୁଷ୍ଠାନ ଦ୍ୱାରା ଦେଶମାନଙ୍କର ଶିକ୍ଷାଦୀକ୍ଷା ଅର୍ଥନୈତିକ କ୍ଷେତ୍ରରେ ଉନ୍ନତି ଘଟେ । ସମାପନ ଦିବସ ପର୍ଯ୍ୟନ୍ତ ଶିଳ୍ପକଳା ପ୍ରଦର୍ଶିତ କରିବାକୁ ପଡ଼ିଥାଏ ।

ସେଥି ସକାଶେ ସ୍ୱାଗତ ଦିବସରେ ସାତଦିନ ପର୍ଯ୍ୟନ୍ତ ସେଠାରେ ରହିବାକୁ ପଡ଼ିଲା । ପ୍ରତିଦିନ ଆମେ ସକାଳ ୧୦ ଘଣ୍ଟା ସମୟରେ ପ୍ରଦର୍ଶନୀ ମଣ୍ଡପକୁ ଉପସ୍ଥିତ ହେଉଁ ଏବଂ ସନ୍ଧ୍ୟା ସମୟରେ ଆମ ରହିବା ବସାକୁ ଆସି ରାତ୍ରି ଭୋଜନ କରି ଶୋଇ ଥାଉଁ । ପ୍ରଦର୍ଶନୀ ସମାପ୍ତ ହେଲା ନଭେମ୍ବର ୧୬ ତାରିଖ ଦିନ ସେ ଦିନ ରାତ୍ରି ୧୦ ଘଣ୍ଟା ପର୍ଯ୍ୟନ୍ତ ପ୍ରଦର୍ଶନୀ ମଣ୍ଡପରେ ରହିବାକୁ ପଡ଼ିଲା ।

ତା ପରବର୍ତ୍ତୀ ଦିନ ୧୭ ତାରିଖ ସକାଳ ୯ ଘଣ୍ଟା ସମୟରେ ଅଫିସକୁ ଗଲୁଁ । ସେକ୍ରେଟେରୀ ଉମାପ୍ରକାଶ କହିଲେ, " ଆପଣମାନେ ଏ ସୁଯୋଗରେ ବିଦେଶକୁ ଆସିଅଛନ୍ତି, ଏଠିକାର କେତେକ ପ୍ରଖ୍ୟାତ ସ୍ଥାନ ଭ୍ରମଣ କରି ଆସନ୍ତୁ । ଏ ଦେଶ ସରକାର ଇଂରେଜ, ତାଙ୍କର ରାଜଧାନୀ ଦେଖି ଆସନ୍ତୁ । ଅପରାହ୍ଣ ୫ ଘଣ୍ଟା ସମୟରେ " ମୋ ନିମନ୍ତ୍ରଣ " ରହିଲା ଯେ ମୋ ଦ୍ୱାରେ ଉପସ୍ଥିତ ହୋଇ ରାତ୍ରି ଭୋଜନ କରିବାକୁ ଅନୁରୋଧ । "



# ବ୍ରିଟିଶ ରାଜଧାନୀ ପରିଭ୍ରମଣ

ପାକିସ୍ତାନୀ ଯୁବକଙ୍କ ସଙ୍ଗେ ଆମେ ୫ ଜଣ ଭାରତୀୟ ଶିଳ୍ପୀ ବାହାରିଲୁ । ନିଶ୍ଚିନ୍ତ ବସତି, ସହର ଭିତରେ ଉର୍ଦ୍ଧ୍ୱକୁ ଉର୍ଦ୍ଧ୍ୱ ରାସ୍ତା । ସେ ରାସ୍ତା ମାନଙ୍କରେ ସବୁ ପ୍ରକାର ଗାଡ଼ି ଓ ଟ୍ରାମ ଗାଡ଼ିର ଚଳ୍‌ଚଳ୍ । ୧ସେକେଣ୍ଡ ମଧ୍ୟ ଅସତର୍କ ହେଲେ ପ୍ରାଣହାନୀ ଘଟିବ । ଯାଉଁ ଯାଉଁ ଜମିରୁ ଉପର ରେଳ୍ ଅତିକ୍ରମ କରି ୧ କିଲୋମିଟର ଉର୍ଦ୍ଧ୍ୱକୁ ଉଠିଲୁ । ମୋତେ ଅତ୍ୟନ୍ତ କ୍ଲାନ୍ତ ଲାଗିଲା । ରାମ କିଶୋର ଲୁଚ୍‌ରା ମୋ ହାତକୁ ଧରି ନେଉଥାନ୍ତି । ଦାଦା ଆପଣଙ୍କୁ କଷ୍ଟ ଲାଗୁଥିବ ନିଶ୍ଚୟ । ମୁଁ ତାହା ଜାଣୁଛି ବୋଲି କହୁଥାନ୍ତି । ପାକିସ୍ତାନୀ ଯୁବକ ମୋ ହାତକୁ ଧରି କହିଲେ, ଗୁରୁ ଆଉ ଚିନ୍ତା ନାହିଁ । ଆମେ ଏ ଠାରୁ ଟ୍ରେନରେ ବସି ଉପରକୁ ଯିବା । ଆଶ୍ୱାସନା ଦେଲେ ସେ ମୋତେ । ୭ ଜଣଙ୍କର ଟିକେଟ ନେଇ ଆସିଲେ । ଟ୍ରେନ ଭିତରେ ବସିଗଲୁ । ମୋ ଶରୀରର କ୍ଲାନ୍ତି ଦୂର ହେଉଥାଏ । ସେ ଟ୍ରେନରେ ବସିବା ସ୍ଥାନ ଗଦି ସିଟ୍ ନୁହେଁ । କାଠରେ ନିର୍ମିତ ବସିବା ସିଟ୍ । ବହୁପରିଷ୍କାର ପରିଚ୍ଛନ୍ନ ସିଟ୍ ଗୁଡିକ ନୂଆ ହୋଇ ଚକ୍‌ଚକ୍ ଦେଖାଯାଉଥାଏ । ଆମ ଦେଶର ପ୍ରଚଳିତ ଟ୍ରେନ ଭଳି ଡଶୁନାହିଁ । ଟ୍ରେନର ଚଉଡ଼ା ଅଳ୍ପ ସଂକୀର୍ଣ୍ଣ । ଡବା ଗୁଡ଼ିକର ଲମ୍ବ ପ୍ରାୟ ସମତୁଲ ହୋଇପାରେ । ଯାତ୍ରୀମାନେ ଶାନ୍ତ ଶିଷ୍ଟ ଭାବରେ ବସିଥାନ୍ତି । ୧୭ ମିନିଟ ପରେ ଟ୍ରେନ ଉପରକୁ ଉଠିଲା । ସେ ଟ୍ରେନ୍‌ର ଚକ ବାହାରକୁ ଦିଶୁ ନ ଥାଏ । ଲୁହା ଧାରି ଉପରେ ଆମର ଟ୍ରେନ୍ ଚକ ଗଡ଼ୁଥାଏ ଏବଂ ଢ଼ିକ୍ ଢିକ୍ ଶବ୍ଦ କରି ଚାଲିଥାଏ । କିନ୍ତୁ ସେ ଟ୍ରେନ ଷ୍ଟେସନ ଠାରୁ ଲୁହା ତାର ରସି ପରିମିତ, ପ୍ରାୟ ୧ଫୁଟ ଗୋଲେଇ ଗୁଡି ସଦୃଶ ୭ଧାଡ଼ି ହୋଇ ଉପରକୁ ଟଣାହୋଇ-

ଅଛି ତଳ ଭାଗ ଷ୍ଟେସନ ଠାରୁ ପର୍ବତର ଶିଖର ପର୍ଯ୍ୟନ୍ତ । ତା ଉପରେ ଟ୍ରେନ ଚକ ଉପରକୁ ଟାଣି ଗତି କରୁଅଛି । ଇଞ୍ଜିନ ବାଷ୍ପ କମ୍ପା ଚକ ଗଡ଼ିବାର ଶବ୍ଦ ନାହିଁ । ଶୁଁ ଶବ୍ଦଟାଏ ସାମାନ୍ୟ ଶୁଭୁଥାଏ । ସତେ ସ୍ୱର୍ଗ ପୁରକୁ ଯାଉଛୁ । କ୍ଷିପ୍ର ଗତିରେ ଉପରକୁ ଗତିକଲାବେଳେ ବାହାରକୁ ଅନାଇଲି । ଟ୍ରେନ ଲାଇନ ଦୁଇପାଖ ବସନ୍ତ ବହୁ ଉଚ୍ଚ ସଉଧ ଅଟ୍ଟାଳିକା ସମସ୍ତ ତଳପଡ଼ ଧରାଶାୟୀ ହେଉଛି । ଅରଣ୍ୟ ସଦୃଶ ବ୍ୟାପ୍ତ ଆକାଶ ଚୁମ୍ବି ଅଟ୍ଟାଳିକା ନାହିଁକି, ଏହା ଥରକେ ଧୂଳିସାତ୍ ହୋଇଯିବ । ଏ ଆଶ୍ଚର୍ଯ୍ୟସ୍ଥ ବସ୍ତି ନାହିଁକି ? ମନରେ ଭାବୁଥାଏ । ଏଥି ବଡ଼ମ୍ବନା ନ ହୋଇ ବସ୍ତୁ ମାୟା ହୋଇଥାଉ । ପ୍ରକୃତରେ ତାହା ହେଲା । ମୋ ମସ୍ତିଷ୍କ ପିଡା ବଢ଼ାଇଲା । ସେ ଦେଶର ବୈଜ୍ଞାନିକ ଶିଳ୍ପୀ ଯାଦୁକର । ଯାହା ଯାଦୁ ତାହା ମାୟା । ଏକ ସ୍ଥାନରେ ସେ ଅଟ୍ଟାଳିକା ସମସ୍ତ ଲଗାଲଗି ହୋଇନାହିଁ । କିଛି ସୀମା ବ୍ୟବଧାନରେ ଅବସ୍ଥିତ । ଯେପରି ତାଳ ଗଛ ଧାଡ଼ି ହୋଇଥାଏ । ଲମ୍ବା ୪ – ୫ ଇଞ୍ଚ କାଠକୁ ୩ – ୪ ଫୁଟ ଉଚ୍ଚତାରେ ତଥା ୪ - ୬ ଇଞ୍ଚ ବ୍ୟବଧାନରେ ତଳ ରୁ ପୋତା ଖୁଣ୍ଟ ଯେପରି ଦଣ୍ଡି ଠିଆ ସେପରି ବୈଜ୍ଞାନିକ ପଦ୍ଧତିରେ ନିର୍ମାଣ କରିଛନ୍ତି । ତା ମଝିରେ ମଝିରେ ରାସ୍ତା । ରାଣ୍ଡ ମଟର ଆଉ ବୁଲୁଛି । ସମୁଦ୍ର ପ୍ରାନ୍ତରୁ ପର୍ବତର ଶିଖର ପର୍ଯ୍ୟନ୍ତ ସଉଧ ସଉଧରେ ପରିପୂର୍ଣ୍ଣ । ପଥର, ଚଟାଣ, ବୃକ୍ଷଲତାର ପର୍ବତ ନୁହେଁ । କେବଳ ସଉଧ ଅଟ୍ଟାଳିକାର ପର୍ବତ ।

ବାହାଇ ଶୃଙ୍ଗ ଉପରକୁ ଟ୍ରେନ ପହଞ୍ଚିଲା ବେଳକୁ ୧୫ ମିନଟ୍ ସମୟ ଲାଗିଲା । ଆମେ ବସିଥିବା ଷ୍ଟେସନରୁ ୨ କି. ମି. ଉର୍ଦ୍ଧ୍ୱରେ ସ୍ତବ୍ଧ ହୋଇ ଟ୍ରେନ ଅଟକି ହେବାରୁ ଆମେ ଅବତରଣ କରି ଗେଟ ସାମନାରେ ପ୍ରବେଶ କଲୁଁ । ଗାର୍ଡ଼ କର୍ମଚାରୀମାନେ ବହୁ ସତର୍କ ହୋଇ ପ୍ରବେଶ ଟିକେଟ ଦେଇ ଛାଡ଼ି ଦେଲେ । ବ୍ରିଟିଶ ସରକାରଙ୍କ ରାଜଧାନୀଠାକୁ ପ୍ରବେଶ କଲୁଁ ।

୭° ୬° ବସନ୍ତ ପର୍ବତ ପନ୍ତର 'ବାହାଇ' ସର୍ବୋଚ୍ଚ ଶୃଙ୍ଗ । ସେ ଉପତ୍ୟକାରେ ବ୍ରିଟିଶ ରାଜଧାନୀ । ବହୁ ବିସ୍ତୀର୍ଣ୍ଣ ଅଞ୍ଚଳ । ୧ କି. ମି. ଦୈର୍ଘ୍ୟ ପ୍ରସ୍ଥ ସମତୁଲ କୋଠା ବାଡ଼ି ଓ ରାଜ ଭବନ । ରାଜ ଭବନ ଭିତରେ ପ୍ରବେଶ କରିବା ସମ୍ପୂର୍ଣ୍ଣ ଭାବରେ ମନା ହୋଇଥାଏ ।

ଅନେକ ପ୍ରଦର୍ଶନଶାଳା ପ୍ରତିଷ୍ଠିତ ହୋଇଥାନ୍ତି । ଅଫିସ ଗୃହ ତଥା କର୍ମଚାରୀମାନଙ୍କର ବାସସ୍ଥାନ ଓ ତନ୍ମଧ୍ୟରେ ମଧ୍ୟରେ ଦୋକାନ ବଜାର । ସେ ମଧ୍ୟରେ ଗୋଟିଏ ମାର୍କେଟ ଭିତରକୁ ପଶିଗଲୁ । ତନ୍ମଧ୍ୟରେ ପ୍ରତ୍ୟେକ ଜିନିଷର ମୂଲ୍ୟ ଦ୍ୱିଗୁଣ କରି ବର୍ଦ୍ଧି କରନ୍ତି । ପ୍ରତ୍ୟେକ ଆବଶ୍ୟକ ସାମଗ୍ରୀରେ ପରିପୂର୍ଣ୍ଣ । ବିଦ୍ୟୁତ, ଆଲୁଅ, ବିଶୁଦ୍ଧ ଜଳବାୟୁ, ଶୌଚାଳୟ ଇତ୍ୟାଦି । ସୁରମ୍ୟ ଆମୋଦ ପ୍ରମୋଦର ମୁଖ୍ୟସ୍ଥାନ ହୋଇଅଛି । ସେ ବିସ୍ତୀର୍ଣ୍ଣ ଅଞ୍ଚଳର ଚତୁର୍ଦ୍ଦିଗ ଲୌହ ନିର୍ମିତ ଜାଲ ବାଡରେ ଆବୃତହୋଇଛି । ପ୍ରତ୍ୟେକରାସ୍ତାର ଉଭୟ ପାଶ୍ୱରେ ଅଶୋକା ଫୁଲଗଛ ଓ ଫୁଲ ଫୁଲରେ ପରିପୂର୍ଣ୍ଣ । ଅପାର ବାରିଧି ତଥା ମହା-ସାଗର ବକ୍ଷରେ ଏଡ଼େ ଅପୂର୍ବ ସୌନ୍ଦର୍ଯ୍ୟ ପୂର୍ଣ୍ଣ ସଂସାର ଦେଖି ଆଶ୍ଚର୍ଯ୍ୟ ହେବା ସ୍ୱାଭାବିକ ।

ଆମ ଭାରତ ବର୍ଷର ସର୍ବୋଚ୍ଚ ଉପତ୍ୟକା, ସର୍ବଶ୍ରେଷ୍ଠ ଶୀର୍ଷ ସ୍ଥାନ କାଶ୍ମୀର ହେଉଛି ଭୂସ୍ୱର୍ଗ । ମୋ ମନରେ ହେଲା, ଏହା ରତ୍ନାକର ବରୁଣ ରଜାଙ୍କର ଇନ୍ଦ୍ରପୁରୀ ନିଶ୍ଚୟ ।

ମଧ୍ୟାହ୍ନ ୨ ଘଣ୍ଟା ହୋଇଗଲା ଖାଇବାକୁ ସେଠାରେ ଭାତ କମ୍ପା ଛୁଟି ପାଇଲୁ ନାହିଁ । ନାସ୍ତାପାଣି ପାଉରୁଟି କକୋକୋଲା ସେବନ କଲୁ ।

ସେଠାରେ ସ୍ଥାନେ ସ୍ଥାନେ ଦୂରବୀକ୍ଷଣ ଯନ୍ତ୍ର, ଦୂରନ୍ତରର ଦୃଷ୍ଟି ଆକର୍ଷଣକାରୀ କାଉଣ୍ଟର ଥାଏ । ସେ ଯନ୍ତ୍ରର ବାମପଟ ବାକ୍ସରେ ହଂକଂ ୧ ଟଙ୍କା ମୁଦ୍ରା ନିକ୍ଷେପ କରି ୧୫ ମିନଟ ପର୍ଯ୍ୟନ୍ତ ଦୂର ଦୂରାନ୍ତକୁ ଦେଖିବା ନିୟମଥାଏ । ସେ ନିୟମ ଅବଲମ୍ବନକରି ଦେଖାଦେଖି କରି ପ୍ରତ୍ୟାବର୍ତ୍ତନର ମାର୍ଗ ଅନୁସରଣ କଲୁ । ଧୀରେ ଧୀରେ ରେଡ଼ ଉପରେ ଅବତରଣ କରି ଆସୁଥିବା ଅବସରରେ ହଠାତ ମୋ ମନରେ ପଡ଼ିଲା । ପ୍ରକାଣ୍ଡ ଓ ଚଟାଣ ପଥରର ରନ୍ଧ୍ର ସ୍ଥାନର ମାଟିମୁଠାଏ ଏବଂ ଗ୍ରେଟ ପଥର ୨ଖଣ୍ଡ କାଗଜରେ ବାନ୍ଧି ଝୋଲା ବ୍ୟାଗରେ ପୁରାଇଲି । ଦେହଟା ହାଲିଆ ହୋଇ ଅସ୍ଥିର ଲାଗୁଥାଏ । ସେତେବେଳେ ସେ ସୌନ୍ଦର୍ଯ୍ୟ ପୂର୍ଣ୍ଣ ଜୀବଜଗତରେ ଅଗମ୍ୟ ସ୍ଥାନ ଦର୍ଶନକରି ମାହେନ୍ଦ୍ର ଯୋଗ ମନକୁ ଉଡ଼ ଟାଣି ରଖି ପାରୁ ନ ଥିଲି । କ୍ଳାନ୍ତ ଅବସ୍ଥାରେ ଟ୍ରେନ ଷ୍ଟେସନକୁ ପହଞ୍ଚି ଟ୍ରେନରେ ବସି ନିମ୍ନ ଭାଗ ବାଟକୁ ଅବତରଣୀକରି ଆସିଲୁ ।

ସନ୍ଧ୍ୟା ୫ ଘଣ୍ଟା ସମୟରେ ସେକ୍ରେଟେରୀଙ୍କ ଖାସ ଭବନକୁ ଗଲୁ । ବହୁ ଲୋକଙ୍କର ସମାଗମ ହୋଇଥାଏ । ସେକ୍ରେଟେରୀଙ୍କ ବାସ ଭବନ ଖୁବ୍ ସୁନ୍ଦର କୋଠା ବାଡ଼ି ବଗିଚା । ସେ ତାଙ୍କର ଆତ୍ମୀୟ ସ୍ୱଜନ ବନ୍ଧୁବାନ୍ଧବଙ୍କୁ ମଧ୍ୟ ନିମନ୍ତ୍ରଣ କରିଥାନ୍ତି । ଅନ୍ୟାନ୍ୟ ଦେଶର କେତେଜଣ ଶିଳ୍ପୀ ଆର୍ଟିଜେନ ମାନଙ୍କୁ ମଧ୍ୟ ଡାକିଥିଲେ । ସମସ୍ତେ ଏକତ୍ରିତ ହୋଇଥିଲୁ । ବାଲିଦେଶର ଜଣେ ବିଶିଷ୍ଟ ବଂଶୀ ବାଦକ ବଂଶୀ ବାଦନ କଲେ । ତବଲା ବାଦନ ପ୍ରଭୃତି ସଙ୍ଗେ ସଙ୍ଗେ ୨ଜଣ ଜାପାନୀ କଣ୍ଠଶିଳ୍ପୀ ଜାପାନୀ ଭାଷାର ଗୀତ ଗାନକଲେ । ମନୋରଞ୍ଜନ କାର୍ଯ୍ୟକ୍ରମ ପରେ ସେକ୍ରେଟେରୀ ଓ ତାଙ୍କ ସ୍ୱାମୀ ଛିଡ଼ାହୋଇ ବିନମ୍ରତାର ସହିତ ଉଦବୋଧନ ଦେଲେ । "ଆମେ ସୌଭାଗ୍ୟକୁ ଯୁ° କ° ଦେଶରେ ବିଶିଷ୍ଟ ଶିଳ୍ପୀଙ୍କର ଶିଳ୍ପକଳା ପ୍ରଦର୍ଶିତ କରି ପାରିଲୁ । ୨ଟି ଦେଶର ସରକାର ଓ ଯୁ° କ° ସରକାରଙ୍କ ମିଳିତ ଉଦ୍ୟମରେ ଏ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା । ତା ଫଳରେ ଏ ପ୍ରଦର୍ଶନୀର ତାତ୍ପର୍ଯ୍ୟ ସମଗ୍ର ପୃଥିବୀରେ ପ୍ରସାରିତ ହେବ । ଆମେ ଆଶାକରୁ କର୍ମ ଦକ୍ଷ ଶିଳ୍ପୀ ଓ କଳାକାର ମାନେ ହିଁ ମହାନ କଳା ସାଧନାର ପରମ୍ପରାକୁ ବଜାୟରଖି ପୃଥିବୀକୁ ତୋଳି ଧରିଛନ୍ତି ଓ ତୋଳି ଧରିଥିବେ," ଇତ୍ୟାଦି ।

ତା'ପରେ ଅନୁରୋଧ କଲେ ଭୋଜନ କରିବାକୁ ବହୁ ପ୍ରକାର ସାମଗ୍ରୀ ମିଷ୍ଟାନ୍ନ ପରିବେଷଣ ହେଲା । ଭୋଜନ ପର୍ବ ସମାପନ କରି ବସାକୁ ଫେରିଲୁ ।



# ଆଜି ନଗର ଭ୍ରମଣ ଃ—

ଆଜ ସେ ଲୋକସ୍ଥାନୀ ଯୁବକ ଆମକୁ ସେହି ନଗରର ବିଭିନ୍ନ ସ୍ଥାନକୁ ଦେଖିବାକୁ ସଙ୍ଗରେ ନେଲେ । ଟାଉନ ବସରେ ଚଢ଼ି କିଛି ଦୂରକୁ ଗଲୁଁ । ଗୋଟିଏ ସେଣ୍ଟ୍ରାଲ ବ୍ୟାଙ୍କ ସମ୍ମୁଖରେ ଅବତରଣ କଲୁ । ସେ ଦିନ ବ୍ୟାଙ୍କ ଛୁଟି ହୋଇଥିଲା । କର୍ମଚାରୀମାନେ ଉପସ୍ଥିତ ନ ଥିଲେ । ଅନ୍ୟ ପଟରେ ମ୍ୟୁଜିୟମ । ସେଠାରେ ଥିଲେ ସେ ଅଦ୍ଭୁତ ମ୍ୟୁଜିୟମର କର୍ମଚାରୀ । ବଡ଼ କୋଠରୀ ଚର୍ତ୍ତି କାଚ ଆବରଣ । ଭିତରକୁ ପଶି ହେବ ନାହିଁ । ବାହାର ପଟରୁ ସବୁ ଦୃଶ୍ୟ ଦେଖାଯାଏ । ଧାଡ଼ି ହୋଇ ଆମେ ଛିଡ଼ା ହେଲୁ । ସେ ଭିତରେ ପର୍ବତ, ପାହାଡ଼, ଅରଣ୍ୟାନୀ ମଧ୍ୟରେ ଝରଣା ତଥା ଜଳ ପ୍ରପାତ ପ୍ରବାହିତ ହୋଇଅଛି । ହରିଣ ପଲ, ମୟୂର ପକ୍ଷୀ ବିଚରଣ କରୁଛନ୍ତି । ସେ ଝରଣାର ଜଳ ସ୍ରୋତରେ ଜଳଜନ୍ତୁ ମାଛ ନାନା ପ୍ରକାରର ମଗର, ତାଙ୍କର ହାବ ଭଙ୍ଗୀ ପ୍ରକାଶ କରି ସନ୍ତରଣ କରନ୍ତି । ଏ ସବୁ ଦୃଶ୍ୟ ଦେଖୁଥାଉଁ କିନ୍ତୁ ଟିକେ ଅସ୍ପଷ୍ଟ ଦେଖାଯାଉଥାଏ । ଅଳ୍ପ ଧୂଆଁ କୁହା ଭଳି ଦେଖାଯାଉଥିଲା । ତହିଁର କର୍ମଚାରୀ ଜଣେ ଆସି ଭିତର ସୁଇଚ ଟିପିଦେଲେ । ଅତ୍ୟନ୍ତ ଉଜ୍ଜ୍ୱଳ ଦିଶିଲା । ବାହାର ପାଖରେ ଥାଇ ଆଉ ଜଣେ କର୍ମଚାରୀ ସଙ୍କେତ ଦେଲେ ଯେ ଯେଉଁଠାରେ ସଂଯୋଗ ହୋଇଥିବା ଦୂରବୀକ୍ଷଣ ଯନ୍ତ୍ର ଆଡ଼କୁ । ତହିଁରେ ଦେଖିବାକୁ ପଡ଼ିଲା । କୋଠା ଭିତରେ ଏତେ ବଡ଼ ପାହାଡ଼ ପର୍ବତ ଅରଣ୍ୟ ଝରଣା ଓ ଜଳ ପ୍ରପାତ । ବନ୍ୟ ପଶୁ ପକ୍ଷୀ ଓ ଜଳ ସ୍ରୋତରେ ଜଳଚର । ପ୍ରକୃତରେ ତ ସବୁ ଜୀବନ୍ତ । କି କାରୁ କାର୍ଯ୍ୟ । ବିଜ୍ଞାନର ତ ଯାଦୁ କୁହୁକ । ବିସ୍ମିତ ହେଉଥାଉଁ । ଏହା ପ୍ରକୃତ ନା ବିଜ୍ଞାନର କୃତ୍ରିମ କାରୁକାର୍ଯ୍ୟ । ସେ ଝରଣାର ଗ୍ରେଟ ପଥର ଖଣ୍ଡ ଜଳସ୍ରୋତରେ ଗଡ଼ ଗଡ଼ ଧଳା ଚିକ୍କଣ ଦେଖାଯାଉଥାଏ । ମୁଁ ୨ ଟା ଗ୍ରେଟ ପଥର ସ୍ମୃତି ଓ ସଂରକ୍ଷଣ ଉଦ୍ଦେଶ୍ୟରେ ତହିଁ ମଧ୍ୟରୁ ନମୁନା ସ୍ୱରୂପ ମୋ ପକେଟରେ ଭର୍ତ୍ତି କଲି ।

ନିତାନ୍ତ ଘଞ୍ଚ ବସ୍ତି ଷ୍ଟାଲିନ ଭିତରକୁ ଗଲୁ । ରାସ୍ତା ସମତୁଲ ନୁହେଁ । ଉଚ୍ଚ, ନୀଚ, ବଙ୍କା ଟଙ୍କା ହୋଇ ଯାନ ଗୁଡ଼ିକ ଯାତାୟାତ କରେ । ସ୍ଥାନେ ସ୍ଥାନେ ବହୁ ଗଭୀରକୁ ସ୍ଲୋପିଙ୍ଗ ରୋଡ଼ ଉପରେ ଗାଡ଼ି ଯାଉଥାଏ ଏବଂ ବହୁ ଉପରକୁ ଚଢ଼ି ଆସେ । ସ୍ଥାନେ ସ୍ଥାନେ ଓଭରବ୍ରିଜ୍ । ତା ନୁହେଁ ଚତୁର୍ଥ ପଞ୍ଚମ ପ୍ରସ୍ଥର ଛକ ଛକଣୀ ବ୍ରିଜରେ ପଶି ଗାଡ଼ି ମଟର ଯାତାୟାତ କରେ । ଗାଡ଼ି ଚାଳକ ବହୁ ସୁଦକ୍ଷ ତଥା କୁଶଳୀ ଅଟନ୍ତି । ସେ ଗାଡ଼ିରେ ଜଣେ ମାତ୍ର ଚାଳକ ରହିଥାନ୍ତି । ଚାଳକଙ୍କ ନିକଟରେ ଟିକେଟ ଯନ୍ତ୍ର ବାକ୍ସ ଥାଏ । ଯାତ୍ରୀ ସମୂହ ଗନ୍ତବ୍ୟ ସ୍ଥାନର ଦୂରତା ଅନୁସାରେ ସେ ବାକ୍ସରେ ମୁଦ୍ରା ନିକ୍ଷେପ କରିଦେଲେ ତତ୍କ୍ଷଣାତ୍ ଟିକେଟ ପାଇ ସିଟ ଉପରେ ବସି ଯାଆନ୍ତି । ବସ୍ ଗାଡ଼ିରେ ଟିକେଟ ମାଷ୍ଟର ଓ କ୍ଲିନର ନ ଥାନ୍ତି ।

ସେ ଦେଶରେ ପାନୀୟ ଜଳ ଓ ବିଦ୍ୟୁତର ଅଭାବ ନାହିଁ । ତଥାପି ଆବଶ୍ୟକ ଠାରୁ ଅଧିକ ଅପବ୍ୟୟ କରି ନଷ୍ଟ କରନ୍ତି ନାହିଁ । ସର୍ବଦା ସଚେତନ ଥାନ୍ତି । ଆମର ଲଣ୍ଠନ ଯେପରି ତେଲ ଲିଭା ହୋଇ ବ୍ୟବହାର କରୁ । ତାଙ୍କର ବିଦ୍ୟୁତ୍ କକ୍ଷ ସମୂହକୁ ସେମାନେ ଅଳ୍ପ ବହୁତ ତେଜାଳିଆ କରନ୍ତି ।

କୌଣସି ସ୍ଥାନରେ କୁଟା କଚରା କାଗଜ ଖଣ୍ଡ ପାଉଁଶ ଝଡ଼ଅଳିଆ ଆବର୍ଜନା ନଥାଏ । କୌଣସି ସ୍ଥାନରେ ଛେପ ଖଙ୍କାର ପକାଇବା ନିଷେଧ । ତେଣୁ ସେ ଦେଶରେ ଥୁକ୍ ଜାଣନ୍ତି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ସବୁ ସ୍ଥାନରେ ସରକାରୀ କର୍ମଚାରୀ ପ୍ରହରୀ ଭାବରେ ଅଛନ୍ତି । ଉପରୋକ୍ତ ନିୟମକୁ ଲଂଘନ କଲେ ତାକୁ ସଙ୍ଗେ ସଙ୍ଗେ ଗିରଫ କରି ଯଥା ଯୋଗ୍ୟ ଦଣ୍ଡ ଦିଆଯାଏ । ତେଣୁ କୌଣସି ସ୍ଥାନରେ ଅପରିଷ୍କାର ଅପରିଚ୍ଛିନ୍ନ ବାତା-ବରଣ ନାହିଁ । ଦୁର୍ଗନ୍ଧ ନାହିଁ ।

ଆମେ ଯେଉଁ ସ୍ଥାନରେ ବୁଲାବୁଲି କରୁଥାଉଁ ସେଠାରେ ଅପରାହ୍ଣ ୪ଘଣ୍ଟା ହୋଇଗଲା । ସେ ଭଦ୍ର ଯୁବକ କହିଲେ ବର୍ତ୍ତମାନ ଏ ଷ୍ଟେସନକୁ ଟ୍ରେନ ଆସୁଛି । ଏହାର ଷ୍ଟପେଜ ଟାଇମ୍ ୧ ମିନିଟ୍, ସମୟ ନିରୂପିତ ହୋଇଥାଏ । ଆମର ବସା ସୌଧଠାରେ ଓହ୍ଲାଇଯିବା । ହୁହୁଁ ହୁହୁଁ ଟ୍ରେନ ଆସିଗଲା । ଟ୍ରେନ ଉପରକୁ ଚଢ଼ିଗଲୁ । ସେ ଦ୍ରୁତଗାମୀ ଟ୍ରେନ ଯାଉଥାଏ କିନ୍ତୁ ଶବ୍ଦ ହେଉ ନ ଥିଲା । ୧୦ ମିନିଟରେ ଟ୍ରେନ ଷ୍ଟେସନ ଆସିଲା । ଆମେ ଆମ ବସାକୁ ପହଞ୍ଚିଲୁ ।

# ଅଲ୍ ଉଆଲ୍ ଡ଼ାନ୍ସ୍ ସେଣ୍ଟର ଓ ନଗର ଭ୍ରମଣ

ଆଜ ପୁନର୍ବାର ଭ୍ରମଣ ହୋଗ ପଡ଼ୁଛୁ । ପ୍ରଦର୍ଶନୀ ସମାପ୍ତ ପରେ ଅଧିକ ୨ ଦିନ ରହିବାକୁ ହେଲା । ସେକ୍ରେଟେରୀଙ୍କ ଆଦେଶ ଅନୁସାରେ ଆଜି ଗୋଟିଏ ନଗରକୁ ଯିବାକୁ ହେଲା । ମୋ ଦେହର ଅସୁସ୍ଥତା ସତ୍ତ୍ୱେ ସାଥି ଗଣଙ୍କ ସଙ୍ଗେ ଯାଉଥାଏଁ । ନଗରଟି ବସନ୍ତ, ଆମ ଦେଶର କଲିକତା ଠାରୁ ଅଧିକ ଘଞ୍ଚ ହେବ । ସେଠାରେ କୃଜ୍ ଇନ୍ ସିନେମା ହଲ ଓ ଅଲ ଉଆଲ ଡାନ୍ସ୍ ସେଣ୍ଟର ସ୍ଥାପିତ ହୋଇଅଛି । ବନ୍ଧୁ ବିସ୍ତୀର୍ଣ୍ଣ ପର୍ବତ ଉପରେ ଏତେ ବଡ଼ କୋଠା ଘର ନିର୍ମିତହେଲା କିପରି, ତାହା ଜାଣିହେଲା ନାହିଁ । ଦେଖିବାକୁ ହେଲା ଯେ କେବଳ ଗୋଟା ପିଲର୍ ଉପରେ ବିସ୍ତୀର୍ଣ୍ଣ ସିନେମା ହଲ ହୋଇଅଛି । ୧୫ ଫୁଟ ଗୋଲେଇ ପରିଧିର ପିଲର୍ ୨୦ ଫୁଟ ଉପରେ ପ୍ଲାଟ୍‌ଫର୍ମ ଉପର କୋଠାରେ ସିନେମା ହଲ । ସେ ପିଲର ଷ୍ଟିଲ ଧାତୁ ଦ୍ୱାରା ଆବୃତ । ଉପରକୁ ଯିବା ଓ ଆସିବା ପାଇଁ ୨ଟା ସିଡ଼ି ଲାଗିଛି । ଗୋଟିଏ ହେଉଛି ଯନ୍ତ୍ରଚାଳିତ ସିଡ଼ି । ତହିଁରେ ଠିଆହେଲେ ତାହା ଉପରକୁ ନେଇଯାଏ ଓ ଅନ୍ୟ ଘଟରେ ଠିଆ ହେଲେ ତଳକୁ ଆଣିଦିଏ । ପ୍ରବଳ ଭିଡ଼ ସଦା ସର୍ବଦା ଲାଗିଥାଏ । ଉକ୍ତ ସ୍ଥଳରେ ୨ଟା ସିନେମା ଟକିଜ । ଗୋଟିଏ ଶୋ ରେ ସହସ୍ରାଧିକ ଜନତା ହେବେ । ଆମେ ଉପରକୁ ଉଠି ସିନେମା ଦେଖି ଆସିବୁ ବୋଲି ମନସ୍ଥ କରିଥିଲୁ କିନ୍ତୁ ଲୋକ ଭିଡ଼ ଦେଖି ଚିନ୍ତିତ ହେଲୁ । ତଳ ପ୍ରସ୍ଥ ଅର୍ଦ୍ଧାଂଶରେ ଲୌହ ଜାଲି ଆବରଣ

ହୋଇଥିଲା । ଭିତରେ ବିଭିନ୍ନ ଦେଶର କୁମାରୀ, ଯୁବତୀ ତାଙ୍କ ଦେଶର ପୋଷାକ ପରିଚ୍ଛଦ ପରିଧାନ କରି ନୃତ୍ୟ ପ୍ରଦର୍ଶନ କରୁଥାନ୍ତି । ଗୋଟିଏ ଦେଶ ପରେ ଗୋଟିଏ ଦେଶର ଝିଅମାନେ ତାଙ୍କ ଘର ଭଙ୍ଗୀ ଦେଖାଇ ନୃତ୍ୟ କରୁଥାନ୍ତି । ଅନ୍ୟାନ୍ୟ ଦେଶଙ୍କ ଗହଣରେ ଆମ ଭାରତୀୟ ସେକ୍ରେ-ଟେରୀ ତଥା ଭାରତୀୟ ମହିଳା ଓ ପୁରୁଷ ବୃନ୍ଦ ମଞ୍ଚାସୀନ ହୋଇ ବସିଥାନ୍ତି । ମିସେସ୍ ବହଲ୍‌ଙ୍କ କନ୍ୟା ମୋଠାରୁ ମାଳୀଆଡୋସ୍ଥା ପାଟ କାସ୍ତା ଶାଢ଼ୀଟିଏ ନେଇଥିଲେ । ସେ ଶାଢ଼ୀ ପରିଧାନ କରି ଭାରତୀୟ ନୃତ୍ୟରେ ଯୋଗଦେଇଥିଲେ ।

ସେଠାରେ ୨ ଘଣ୍ଟା ରହିବା ପରେ ଗୋଟିଏ ମାର୍କେଟ ଭିତରକୁ ପଶିଗଲୁ । ପ୍ରଥମେ ଗୋଟିଏ ବଡ଼ ଫଳ ଦୋକାନ ନିକଟରେ ଛିଡ଼ା ହୋଇ ଦେଖିଲି ଫଳ ବହୁତ ଚଢ଼ା ଦରରେ ବିକ୍ରି କରୁଥାନ୍ତି । ପ୍ରତ୍ୟେକ କଦଳୀ ଉପରେ ଷ୍ଟିକର ଲଗାଇ ୪ ଟଙ୍କା ଲେଖା ହୋଇଥାଏ । ଡାଲିମ୍ବ ଗୋଟାକୁ ୧୧ଟଙ୍କା । କେନ୍ଦୁ ଗୋଟାକୁ ୩ଟଙ୍କା । ଏପରି ପ୍ରତ୍ୟେକ ଜିନିଷର ମୂଲ୍ୟ ଅତ୍ୟଧିକ ହୋଇଥାଏ ।

ସେ ମାର୍କେଟର ଅର୍ଦ୍ଧାଂଶ ଭେଜିଟେବୁଲ ଖାଦ୍ୟ ଜିନିଷ ଓ ଅର୍ଦ୍ଧକ କେବଳ ସମୁଦ୍ର ମାଛରେ ପରିପୂର୍ଣ୍ଣ । ବଡ଼ ମାଛ ଗୁଡ଼ିକ ପ୍ରାୟ ଗୋଟାକୁ ୧ କୁଇଣ୍ଟାଲ ରୁ ଅଧିକ ହୋଇଥିବ । ଦୂରରୁ ଅନୁଭବ କରି କରି ଦେଖୁଥାଉଁ ପରିଷ୍କାର ପରିଚ୍ଛନ୍ନ ହେଲେ ମଧ୍ୟ ଆମିଷର ଉତ୍କଟ ଗନ୍ଧ ହେଉଥିବ ବୋଲି ଭିତରକୁ ପଶିଲୁ ନାହିଁ ।

୩ ଘଣ୍ଟା ହୋଇଗଲା । ସମସ୍ତଙ୍କର ପେଟ ଭୋକରେ ବ୍ୟାକୁଳ । ସେ ଯୁବକ ଅସିମ ମହମ୍ମଦ ଆମ ଭାରତୀୟ ହୋଟେଲ ଠାକୁ ଆମକୁ ନେଲେ । ଖାଦ୍ୟ ପଦାର୍ଥ ନିର୍ମିତ ଅର୍ଡର ଦେବା ସକାଶେ ୨୦ମି: ଅପେକ୍ଷା କରିବାକୁ ପଡ଼ିଲା । ଅରୁଆ ଭାତ, ଡାଲି, ତରକାରୀ ଓ ଶାଗ । ସମସ୍ତେ ଖିଆ ପିଆ ସାରି ସେ ଭଦ୍ର ଯୁବକ ପ୍ରତ୍ୟେକଙ୍କର ହୋଟେଲ ବୂର୍ଜ ୬୦ ଟଙ୍କା ଲେଖାଏଁ ଦେଲେ । ଫେରି ସବୁ ଆସିଲୁ । ସେ ଦିନ ସନ୍ଧ୍ୟା ସମୟରେ ମୋ ଦେହ ବହୁତ ପୀଡ଼ା ହେଲା । ଡାକ୍ତର ଆସି ଔଷଧ ଦେଲେ । ଔଷଧ ସେବନ କରି ୨ ଘଣ୍ଟା ବିଶ୍ରାମ ନେଲି ।

ସନ୍ଧ୍ୟା ୭-୩୦ ମି: ରେ ସେକ୍ରେଟେରୀ କହିଲେ, ଆଗାମୀ କାଲି ୨୦ ତାରିଖ ଦିନ ଆପଣ ମାନଙ୍କର "ଉଡ଼ାନ୍" ର ଏଡ଼ଭାନସ୍ ଟିକେଟ ହୋଇଅଛି । ଏଥର ଇଣ୍ଡିଆ ଜେଟ ବିମାନରେ ଯିବାକୁ ହେବ । ଆପଣ ମାନଙ୍କୁ ଅପରାହ୍ଣ ୪ ଘଣ୍ଟା ସମୟରେ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରି ବିଦାୟ କରିବୁ । ନିଜ ନିଜର ଜିନିଷ ପତ୍ର ପ୍ରସ୍ତୁତ କରି ରଖିଥାନ୍ତୁ, କହି ସେ ଚାଲିଗଲେ । ଆମେ ଆମ ବସାରେ ରାତ୍ରୀ ଯାପନ କଲୁ ।

ରାତିରେ ମୋର ନିଦ ହେଲା ନାହିଁ । ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ଉଦ୍ଦେଶ୍ୟରେ ମନଟା ଉତ୍କଣ୍ଠିତ ହେଉଥାଏ । ସକାଳର ନିତ୍ୟକର୍ମ ସାରି ବସିଥାଉଁ । ସେ ଭଦ୍ର ଯୁବକ ଆସି କହିଲେ, ଅପରାହ୍ଣ ୨ଟା ପର୍ଯ୍ୟନ୍ତ ବଜାରରୁ ଆପଣମାନେ ମନ ମୁତାବକ ଜିନିଷ ସଉଦା କରି ଆସନ୍ତୁ । ଆଉ ସମୟ ନାହିଁ । ଆମେ ସମସ୍ତେ ତାଙ୍କ ସଙ୍ଗେ ସେଠାର ବଜାରକୁ ଗଲୁ । ମୁଁ ସେ ବଜାରରେ ଉତ୍କୃଷ୍ଟ ଧରଣର ଘଡ଼ି ୨ଟି ଓ କଲମ ୧୫ଟି କିଣିଲି । ଆଉ ଗୋଟିଏ ବଡ଼ ଦୋକାନକୁ ଗଲି । ସେଥିରେ କେବଳ କ୍ୟାମେରା ପରିପୂର୍ଣ୍ଣ । ସେଥିରୁ ୟାସିକା ନାମକ ଅଟୋ ଫୋକସ୍ କ୍ୟାମେରା କିଣିଲି । ଉତ୍କୃଷ୍ଟ ଧରଣର ଆଟାଚିଟିଏ କିଣିଲି । ଏୟାରପୋର୍ଟ ଠାରେ ନେବା ଆଣିବା କରିବାର ବ୍ୟାଗ ବାକ୍ସ ବୋହେଇ ଷ୍ଟ୍ରେଚର ଗୋଟିଏ କିଣିଲି, ତାହା ୨ଚକ ଯୋଗଡ଼ ଓ ଓଜନରେ ହାଲୁକା ଥାଏ । ସାଥି ଗଣ ମଧ୍ୟ ତାଙ୍କର ସଉଦା ସାରିଥାନ୍ତି । ସମସ୍ତେ ଏକତ୍ର ହୋଇ ଆସିଲୁ ।



# ହଂ କଂ ପ୍ରଦର୍ଶନୀରୁ ବିଦାୟ ଓ ବିମାନ ଆରୋହଣ

ଅପରାହ୍ନ ୪ ଘଣ୍ଟା ସମୟରେ ହଂକଂ ପ୍ରଦର୍ଶନୀର ଅଫିସର ଓ ଆମ ଭାରତୀୟ ଅଫିସର ବୃନ୍ଦ ଏକତ୍ର ହୋଇ ଗୋଟିଏ ସଭା ଆୟୋଜନ କରିଥିଲେ । ସେ ସଭାରେ ଆମ ଭାରତୀୟ ସେକ୍ରେଟେରୀ ମିସେସ୍ ଉମା ପ୍ରକାଶଙ୍କ ଅଧ୍ୟକ୍ଷତାରେ ଆମ ୫ଜଣ ଶିଳ୍ପୀଙ୍କୁ ସମ୍ମାନିତ କରି ଉପାୟନ ଓ ସାର୍ଟିଫିକେଟ ଦେବା ସଙ୍ଗେ ସଙ୍ଗେ ପାରିତୋଷିକ ଅର୍ଥ ପ୍ରଦାନ କରି ବିନମ୍ରତାର ସହିତ ଶ୍ରଦ୍ଧା ଜ୍ଞାପନ କଲେ ।

ରାତ୍ର ୯ଘଣ୍ଟା ସମୟରେ ଭୋଜନ କରି ତାଙ୍କଠାରୁ ବିଦାୟ ନେବା ଅବସରରେ ଅଫିସର ମାଡାମ୍ ବୃନ୍ଦ ବଚ୍ଚୋକେଲିଏ ଖେଳନା ବୋଲି ବଡ଼ ବଡ଼ ପ୍ଲାଷ୍ଟିକ ବ୍ୟାଗରେ ଭର୍ତ୍ତି ହୋଇଥିବା ଖେଳନା ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ବ୍ୟାଗ ଧରାଇ ଆନନ୍ଦରେ କରତାଳି ଦେଇ ତଥା ହାତକୁ ହାତ ମିଳାଇ ବିଦାୟ କରି ରହିଲେ ।

ଅଫିସ ଗାଡ଼ି ୨ଟା ଆସିଲା । ବାକ୍ସ ଆଟାଚି ଓ ମୋର ବୃତ୍ତି ସରଞ୍ଜାମ ୨ଟା ବଣ୍ଡଲ ଗାଡ଼ିରେ ବୋଝେଇ କରି ବିମାନ ବନ୍ଦରକୁ ଆସିଲୁଁ । ଆମ ସଙ୍ଗରେ ଜଣେ ଅଫିସର ମଧ୍ୟ ଆସିଥିଲେ । କଷ୍ଟମସ ଅଫିସର କାମ ଏବଂ କାଗଜ ପତ୍ର ତଦାରଖ କଲା ବେଳକୁ ୩ଘଣ୍ଟା ସମୟ ଲାଗିଲା । ରାତି ୨ ଘଣ୍ଟା ସମୟରେ ବିମାନ ଆରୋହଣ କଲୁ । ବିମାନର ଦ୍ୱାରମାନଙ୍କରେ କର୍ମଚାରୀମାନେ ସୁବ୍ୟବସ୍ଥା କରୁଥାନ୍ତି ।



ପ୍ରତ୍ୟାବର୍ତ୍ତନ ସମୟରେ ସାଥିରଣଙ୍କ ସଙ୍ଗେ, ବାମରୁ ଶ୍ରୀ ରମ କିଶୋର ତ୍ରିପୁରା, ସଲିମ ମହମ୍ମଦ, ଜୟନ୍ତ ରେପ୍ରା ଓ ଚାକିଯ୍'ନୀ ଯୁବକଙ୍କ ଗହଣରେ ଲେଖକ ଶାନ୍ତି ।

ମୋ ଦେହ କ୍ଳାନ୍ତ ଲାଗୁଥାଏ । ଘଡ଼ିର ଏଲମିତ ପ୍ରହରରେ ମୋ ହାତବନ୍ଧା ଘଡ଼ିଟାକୁ ଦେଖିଲି ସମୟ ୩ ଘଣ୍ଟା । ମୁଁ ବସିଥିବା ସିଟ ର ସୁଇଚକୁ ଟିପିଦେଲି ଯେ ସିଟ ଟି ପଛପଟକୁ ଦୋହଲି ପଡ଼ିଲା । ନିଦ୍ରିତ ହୋଇ ଶୋଇ ପଡ଼ିଲି । ବିମାନ ଚାଲୁଥାଏ । ମୁଁ ଆଉ କୌଣସି ବିଷୟ ଜାଣିପାରିଲି ନାହିଁ ।

କିଛି ସମୟ ପରେ ଜାଗ୍ରତ ହୋଇ ପିନ୍ଧିଥିବା ଘଡ଼ିକୁ ଦେଖେଁ ୬ ଘଣ୍ଟା ସମୟ ବିତି ଗଲାଣି । ସଚେତନ ହୋଇ ବାଥରୁମ୍‌କୁ ଗଲି । ଶୌଚ କର୍ମ ସାରି ମୋ ସିଟରେ ବସିପଡ଼ିଲି । ୧ଘଣ୍ଟା ପରେ ବିମାନ ଧୀରେ ଗତିକରି ଦିଲ୍ଲୀ ବିମାନ ବନ୍ଦର ଠାରେ ଅବତରଣ କଲା ।

ସମସ୍ତେ ବିମାନରୁ ଓହ୍ଲାଇ କଷ୍ଟମସ ଅଫିସକୁ ଆସି ହଂ କଂ ଠାରେ ଦେଇଥିବା ସ୍ୱାସ୍ଥ୍ୟ ସାର୍ଟିଫିକେଟ ଦେଖାଇଲେ । ତଥାପି ସେ କର୍ମଚାରୀମାନେ କର୍ତ୍ତବ୍ୟ ପରାୟଣହୋଇ ବୈଜ୍ଞାନିକ ପ୍ରକ୍ରିୟାରେ ତଦାରଖ କରି ଛାଡ଼ିଦେଲେ ।

ପ୍ରଗତି ମଇଦାନକୁ ପହଞ୍ଚିବା ୧ଘଣ୍ଟାପରେ ସୂର୍ଯ୍ୟୋଦୟ ହେଲେ । ଗ୍ରାମଝାଲ ଠାରେ ଧେନୁଧର ମନବୋଧ ରଣା ଓ ସଦାନନ୍ଦ ମୋତେ ବହୁ ସମାଦର କରି ମୋର ସୁବ୍ୟବସ୍ଥା କରୁଥାନ୍ତି । ପ୍ରାତଃ କାଳରୁ ସୌଭାଗ୍ୟ ନିତ୍ୟ କର୍ମ ସାରି ବିଶ୍ରାମ ଅବସରରେ ଉପଲବ୍ଧି କଲି, ମନରେ ସ୍ୱଦେଶଚିନ୍ତା ଜାଗ୍ରତ ହେଲା ।

# ମା ମାଉସୀ ମିଳନ ଃ—

ମୁଁ ଭାରତ ମାତାଙ୍କ କୋଳରେ ଜନ୍ମ ଲଭ କରିଅଛି । ଭୂ ବହ୍ନି, ଜଳ, ବାୟୁ ସେବନ କରି ଜୀବନ ଧାରଣ କରିଛି । କୌଳିକ ବୃତ୍ତି ରୂପେ ପାରମ୍ପାରିକ କଳାକୃତିରୁ କଞ୍ଚିତ ମାତ୍ର ଶିକ୍ଷାଲଭ କରିଅଛି । ସେ ଭାରତ ମାତାଙ୍କର କରୁଣାରୁ କେନ୍ଦ୍ର ସ୍ଥଳ ଦିଲ୍ଲୀ ଠାରୁ ବିଦେଶ ଯାତ୍ରା କରିଥିଲି ।

ମୁଁ ଶୋଇଥିବା କୋଠରୀ ଭିତରୁ ବାହାରି ପଡ଼ିଲି, ଅଶ୍ୱତ୍ଥ ବୃକ୍ଷ ନିକଟରେ ଛିଡ଼ା ହୋଇ ପ୍ରାର୍ଥନା କଲି —

ହେ ଭାରତ ଜନନୀ ତବ କରୁଣାରୁ ବିଦେଶରୁ ପ୍ରତ୍ୟାବର୍ତ୍ତନ କରି ମୁଁ ବର୍ତ୍ତମାନ ତୁମ ପାଦ ତଳେ ଉପସ୍ଥିତ ହୋଇଅଛି । ହେ ଭାରତ ମାତା ତୁମ ପରିଧେୟ ବସ୍ତ୍ର ଓଢ଼ଣା ପଣତକାନି ତଳେ ମୁଁ ଅବୋଧ ଶିଶୁ ରୂପେ ସର୍ବଦା ଅଳିଅଳି ହେଉଥାଏଁ । ମୋ ଆଖିର ଲୁହକୁ ପଣତ କାନିରେ ପୋଛିଦେଇ ଆହ୍ଲାଦିତ କରି ଆନନ୍ଦ ଅମୃତ ଓ ଅପୂର୍ବ ଶାନ୍ତି ଦେଉଅଛ ତଥା ମୋ ଜୀବନକୁ ସତ୍ ପଥରେ ଅଗ୍ରଗାମୀ ହେବା ପାଇଁ ମହାନ ଆଶିଷ ପ୍ରଦାନ କରୁଅଛ । ହେ ମାତା ତୁମର କନିଷ୍ଠ ଭଗିନୀ ଦ° କ° ଦେଶ ମୋର ମାଉସୀ ମାଆ । ମୋତେ ବହୁ ସସ୍ନେହ ଆଦରରେ ଆହ୍ୱାନ କରିଥିଲେ । ମୋ ମାଉସୀ ମାଙ୍କର ଭବନକୁ ମୁଁ ଉପସ୍ଥିତ ହେଲି କ୍ଷଣି ମୋତେ ସେ ଅପାର ସ୍ନେହ ଓ ଆତ୍ମୀୟତା ଜଣାଇ ତଥା ଶିକ୍ଷା ଦୀକ୍ଷା ଦେଇ ସର୍ବ ପଦର ଜନ ପର୍ଯ୍ୟନ୍ତ ଆହ୍ଲାଦିତ ଶୁଭାଶୀଷ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଆନନ୍ଦର ସହିତ ବିଦାୟ କରିଥିଲେ । ଧନ୍ୟ ସେ ମାଉସୀ ମାଙ୍କର ଅତୁଳ ସ୍ନେହ ମୋ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସ୍ମରଣ କରୁଥିବି ।

ହସ୍ତତନ୍ତ ବାଛି, ରଙ୍ଗ, ବସ୍ତ୍ର ବୟନ କରିବା ପାଇଁ ପରମେଶ୍ୱର ମୋତେ ଏହି କର୍ମ ଦେଇଛନ୍ତି । ମୋ ଜୀବନରେ ଯେତେ ନୂତନ ନମୁନା ଉଦ୍ଭାବନ କରି ଆସୁଅଛି ସେ ସବୁ ବସ୍ତ୍ର ପତ୍ରକୁ ଅତ୍ୟନ୍ତ ଆଦର କରୁଥାନ୍ତି ମୋ ଭାରତୀୟ ଜନନୀ ସମୂହ । ଏଣୁ ମୁଁ ମୋର ସୌଭାଗ୍ୟ ବୋଲି ଆନନ୍ଦିତ ହେଉଥାଏ । ବିହ୍ୱଳିତ ହୋଇ ମୋ କଣ୍ଠସ୍ୱର କ୍ଷୀଣ ହୋଇ ରୁଦ୍ଧ ହୋଇଗଲା ।

ଏତିକି ମାତ୍ର ସ୍ମରଣ କରି ହଂ କଂ ରାଜଧାନୀ ଠାରୁ ଆଣିଥିବା ମୃତ୍ତିକା ଓ ଶ୍ରେଷ୍ଠ ପଥର ଖଣ୍ଡକୁ, ଶେଲ୍‌ଡ୍ କମ୍‌ପ୍ଲେକ୍‌ସର ସମ୍ମୁଖସ୍ଥ ବେଦୀ ଉପରେ ସାଦର ଅଶ୍ୱତ୍ଥ ବୃକ୍ଷ ମୂଳର ମାଟିରେ ମିଶ୍ରଣ କଲି । ହେ ଭାରତ ମାତା ଓ ହଂ କଂ ମାଉସୀ ଭୂମି ଭଗିନୀ ହସ୍ତ ସାକ୍ଷାତରେ ଏକତ୍ର ମିଳନ ହୁଅ ବୋଲି ସାଷ୍ଟାଙ୍ଗେ ପ୍ରଣିପାତ କଲି ।

ଏ ଅବସରରେ ଗୋପବନ୍ଧୁ ସାହୁ, ମନବୋଧ ରଣା, ସଦାନନ୍ଦ ରଣା ଓ ଅନ୍ୟାନ୍ୟ ଯୁବକ ବୃନ୍ଦ ମୋ ନିକଟରେ ଛିଡ଼ା ହୋଇ ଦେଖୁଥାନ୍ତି । ... ... ... ... ... ... ... ... ।

ସମୟ ଘ: ୧୧।୩୦ ମି: ଆମେ ହଂ କଂ ଯାତ୍ରା କରିଥିବା ୫ ଜଣ ଶିଳ୍ପୀ ସିନିଅର ଡାଇରେକ୍ଟର ଶ୍ରୀମାନ ଜ୍ୟୋତିନ୍ଦ୍ର ଜୈନ ସାହେବଙ୍କ ନିକଟକୁ ଯାଇ ସାକ୍ଷାତ କଲୁଁ । ଆମଠାରୁ ହଂ କଂ ପ୍ରଦର୍ଶନୀର ସୁ ସମ୍ବାଦ ଶୁଣିସେ ବହୁତ ଆନନ୍ଦିତ ହେଲେ ।

ଶ୍ରୀଯୁକ୍ତ ଅମଲ ସାହେବ ଏଡ଼ିସନାଲ ଡାଇରେକ୍ଟର ଶ୍ରୀ ମୁସ୍ତାକ ଖାଁ, ଶ୍ରୀ ବିନୋଦ ଚନ୍ଦ୍ର ମେହେର, ଓ ଶ୍ରୀ ଆନସାରୀ ପ୍ରମୁଖ ଅଫିସର ଆମ ଠାରୁ ଶୁଭ ସମ୍ବାଦ ଶୁଣି ଆନନ୍ଦ ଲାଭ କଲେ ।

ଗୋପବନ୍ଧୁ ସାହୁ ବହୁ ଶ୍ରଦ୍ଧାଳୁ । ମୋ ପାଇଁ ଉତ୍କଳ ଏକ୍‌ସପ୍ରେସ ଟ୍ରେନ ଟିକେଟ ରିଜର୍ଭେସନ୍ କରିଆଣିଥିଲେ । ମୁଁ ଟ୍ରେନରେ ବସି ଟ୍ରେନ୍ ଛାଡ଼ିବା ପର୍ଯ୍ୟନ୍ତ ମୋ ସଙ୍ଗରେ ବହୁ କଥୋପକଥନ ହୋଇ ମୋତେ ବିଦାୟ କଲେ । ପରମେଶ୍ୱରଙ୍କ କରୁଣାରୁ ନିର୍ବିଘ୍ନରେ ମୋ ଘର ବରପାଲିକୁ ପହଞ୍ଚିଲି ।

# ପ୍ରାଦେଶିକ ନୀତି ଅନୁଭୂତି :—

ଆମ ଭାରତ ବର୍ଷର ଖାଦ୍ୟ ପଦାର୍ଥ ଯେପରି ଆମେ ପ୍ରଚୁର ଉତ୍ପାଦନ କରିପାରୁଛୁ, ସେପରି ଖାଦ୍ୟସାମଗ୍ରୀ ପ୍ରସ୍ତୁତ କରିଜାଣୁ । ଖାଦ୍ୟକୁ ସୁସ୍ୱାଦୁ ଓ ରୁଚିପୂର୍ଣ୍ଣ କରି ଆମର ପାକ ପ୍ରକ୍ରିୟା ବହୁତ ସୁନ୍ଦର କରି ଖାଉ । ପନିପରିବା ଠାରୁ ଆରମ୍ଭ କରି ସୁମିଷ୍ଟ ମିଷ୍ଟାନ୍ନ ଆମର ପ୍ରତ୍ୟେକ ଜଳଖିଆ ଦୋକାନ ଠାରୁ ଅତି ବଡ଼ ହୋଟେଲ ପର୍ଯ୍ୟନ୍ତ ସବୁଠାରେ ସ୍ୱଚ୍ଛ ସୁନ୍ଦର ଦେଖାଯାଏ । ତାହା ସେ ଦେଶରେ ନାହିଁ । ଏ ସମ୍ବନ୍ଧରେ ଗବେଷଣା କଲେ ଜଣା ପଡ଼େ, ତାଙ୍କ ଠାରେ ଏ ଦେଶର ଦ୍ରବ୍ୟ ନାହିଁ । ତେଣୁ ପାକ ପ୍ରଣାଳୀ ଦ୍ୱାରା ରୁଚିପୂର୍ଣ୍ଣ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି ଜାଣନ୍ତି ନାହିଁ । ତେଣୁ ସେମାନେ ଖାଇ ଜାଣନ୍ତି ନାହିଁ କହିବାକୁ ହେବ ।

ତାଙ୍କ ଦେଶରେ ପାଉଁରୁଟି, କଟଡ଼, କେକ୍ ଇତ୍ୟାଦି ଖାଦ୍ୟ ଜିନିଷ ପ୍ଲାଷ୍ଟିକ ପାକେଟ ମାନଙ୍କରେ ବହୁତ ଯତ୍ନର ସହିତ ସିଲ୍ କରି ରଖନ୍ତି । ପାଚିଲକଣ୍ଟା, ବାଇଗଣ, ଲଙ୍କା, କୋଳି, ଶାଗ ପ୍ରଭୃତି ଅନ୍ୟ ଦେଶରୁ ଆଣି ଯତ୍ନରେ ରଖି ବ୍ୟବହାର କରନ୍ତି । କେତେକ ଜିନିଷ ତେଣୁ ବାସି ଜଣାପଡୁଥାଏ ।

ଆମ ଦେଶର ପଶୁସମ୍ପଦ ସେ ଦେଶରେ ନାହିଁ । ତାଙ୍କର ଚାରଣ ସୀମା ଶୂନ୍ୟ । କେବଳ ସମୁଦ୍ର ମଧ୍ୟରୁ ଜଳ ଜୀବ ଧରନ୍ତି । ବିଭିନ୍ନ ପ୍ରକାର ମାଛ । ଆମେ ଦେଖି ନ ଥିବା ମାଛ । ଶଂଖିକା, ଶଂଖ, ଶାମୁକା ପ୍ରଭୃତି



ଗୁରୁଜନ ବୃନ୍ଦଙ୍କର ମୋ ଗୃହରେ ପଦାର୍ପଣ । ଶ୍ରୀଯୁକ୍ତ ଭଗୀରଥି ପୂଜାରୀଙ୍କ ଗହଣରେ ବାମରୁ ଶ୍ରୀଯୁକ୍ତ ବଳିଷ୍ଠ ପ୍ରଧାନ, ଶ୍ରୀ ଆନନ୍ଦ ମେହେର ଶ୍ରୀ ନୀଳମଣି ଠିହାଡ଼ ଶ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀଯୁକ୍ତ ନିକୁଞ୍ଜ ବିହାରୀ ସିଂ, ବିଧାୟକ, ଭବାନୀ ଶଙ୍କର ପ୍ରଧାନ ଗୁଣସାଗର ସତପଥୀ, ପୂର୍ଣ୍ଣଚନ୍ଦ୍ର ମେହେର ଓ ବୀରବର ସାହୁ ।

ତଥା ସମୁଦ୍ର ଜୀବ ଓ ପ୍ରାଣୀଙ୍କର ମାଂସ ପ୍ରଧାନ ଖାଦ୍ୟ ହୋଇଥାଏ । ସେ ପ୍ରାଣୀଙ୍କର ଅସ୍ଥି ଦାନ୍ତ ଚର୍ମ ରୁ ହସ୍ତଶିଳ୍ପ ଦ୍ୱାରା ଉପକରଣ ତିଆରି କରନ୍ତି । ସମୁଦ୍ର ମଧ୍ୟରୁ ବହୁ ମୂଲ୍ୟ ରତ୍ନ ମଣି ମୁକ୍ତାଦି ସଂଗ୍ରହ କରି ସେ ଦେଶ ଧନଶାଳୀ । ତାଙ୍କର ଧନ ସମ୍ପତ୍ତି ତାଙ୍କ ମଧ୍ୟରେ ତେଣୁ ରତ୍ନାକର ପ୍ରସିଦ୍ଧ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ତାଙ୍କର ଖାଦ୍ୟ ପଦାର୍ଥ ଭିନ୍ନ । ମୋ ମନରେ ଭାବଥାଏ ମାନବର ଚରିତ୍ର ମଧ୍ୟ ଭିନ୍ନ ଥାଇପାରେ । କିନ୍ତୁ ତାଙ୍କ ଦେଶ, ଜାତି, ସମାଜରେ ପ୍ରଚଳିତ ଖାଦ୍ୟ ଖାଇ ସେମାନେ ସନ୍ତୁଷ୍ଟ ଓ ଆନନ୍ଦ ମନା ହୋଇଥାନ୍ତି । ତଦ୍ୱାରା ତାଙ୍କର ଶରୀର ହୃଷ୍ଟ ପୁଷ୍ଟ । ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ଅନୁଭବ କରି ହୃଷ୍ଟପୁଷ୍ଟ ମୁହଁରେ ହସ ଫୁଟି ଉଠୁଥାଏ ।

ଜାଣି ପାରିଲି, ଆମ ଅଞ୍ଚଳରେ କହନ୍ତି, ମନୁଷ୍ୟ ଭୁଖେ ନହିଁ ମରେ ଦୁଃଖେ ମରେ ।

ଖାଏମି ଖାଏମି ହେଲେ, କୁବେର ସମ୍ପଦ ନାହିଁ ପୁରେ
ଘୃତ ଗୁନ୍ଥ ଧାଅଁ ଲ କ ଜାଏତ୍ ଗୁନ୍ଥ ଧାଅଁ ଲ ।

ଆମେ ଭାରତ ମାତାଙ୍କ କୋଳରେ ଜନ୍ମ ଗ୍ରହଣ କରିଛୁ । ପୃଥିବୀ ମଧ୍ୟରେ ଆମ ଭାରତ ବର୍ଷ ସର୍ବ ଶ୍ରେଷ୍ଠ ବିବେଚିତ ହୋଇ ପାରିଛି । ଭାରତରେ ଆଦି ପୁରୁଷ ପରମ ବ୍ରହ୍ମ ଭଗବାନ ଅବତାର ଧାରଣ କରନ୍ତି । ଏହି କର୍ମ ଭୂମି ଭାରତ ମାତାଙ୍କ କୋଳରେ ଦେବତା, ମୁନି, ଋଷି, ତପସ୍ୱୀ ସାଧୁ, ଜ୍ଞାନୀ ଓ ମହାପୁରୁଷ ଜନ୍ମ ଗ୍ରହଣ କରୁଛନ୍ତି ତଥା ପୃଥିବୀର ମଙ୍ଗଳ ସାଧନ କରି ଯାଉଛନ୍ତି । ଆମ ଭାରତ ପୁଣ୍ୟ ଭୂମିରେ ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରାପ୍ତ କରି ସ୍ୱର୍ଗ ଓ ବିଷ୍ଣୁ ଲୋକ ପର୍ଯ୍ୟନ୍ତ ଗତି କରି ପାରୁଛନ୍ତି । ଭାରତ ବର୍ଷରେ ବିଦ୍ୟା, ବୁଦ୍ଧି, କୌଶଳ, କୃଷି, ଶିଳ୍ପ, କଳା ଇତ୍ୟାଦି ପରିପୂର୍ଣ୍ଣ ହୋଇ ରହିଅଛି ।

ଏଣୁ ପୁଣ୍ୟଭୂମି ଭାରତ ବର୍ଷରେ ମାନବର ଜନ୍ମ ବହୁ ଦୁର୍ଲ୍ଲଭ ବହୁ ତପସ୍ୟା କରି ଜନ୍ମ ହୋଇଥାଏ ମନୁଷ୍ୟ ଗର୍ଭରୁ । ଏହା ବେଦ ବିଦ୍ୟା ଶାସ୍ତ୍ର ପୁରାଣାଦିରେ ସ୍ପଷ୍ଟ ଭାବରେ ବର୍ଣ୍ଣିତ ହୋଇଅଛି ତଥା ଆମେ ମଧ୍ୟ ସମସ୍ତେ ଜାଣି ବୁଝି ପାରୁଛୁ ।

ଜନ୍ମ ତ ହୋଇଛୁ, ମୃତ୍ୟୁ ହେବା ନିଶ୍ଚିତ । ନିଜର କର୍ମଫଳ ଭୋଗ କରି ଯଥା ସମୟରେ ମରିଯିବା । ମାନବକୁ ପରମ ପିତା କୃପା କରି ଅସୀମ ସୁବିଧା ସୁଯୋଗ ଦେଇଛନ୍ତି । ପୂର୍ବ ଜନ୍ମ ଜନ୍ମାନ୍ତରର କଥା ଧରି ନ ଗଲେ ମଧ୍ୟ ମାନବ ତ ଜନ୍ମହୋଇଛି, ନିଶ୍ଚିତରେ ମରିଯିବ । ଜନ୍ମ ଓ ମୃତ୍ୟୁ ଏତିକ ସୀମା ମଧ୍ୟରେ ମାନବର କର୍ମ କ'ଣ ହେବା ଉଚିତ ତାହା ଜାଣିବା ପାଇଁ ମଧ୍ୟ ଦିଗ ଦର୍ଶନ ମିଳି ପାରୁଛି । ତେଣୁ ଆମକୁ ବିଦ୍ୟା ବୁଦ୍ଧି ଖୋଜିବାକୁ ପଡ଼ିଥାଏ । ମାନବ ମାତ୍ର ନିୟମ ଓ ଶିଷ୍ଟାଚାରର ପାଳନ ସଙ୍ଗେ ସଙ୍ଗେ କର୍ମ କରିବା ଆବଶ୍ୟକ । ଯେହେତୁ ପୁଣ୍ୟ ଭୂମି ଭାରତରେ ଜନ୍ମ ଲାଭ କରି ଅତ୍ୟନ୍ତ ସୌଭାଗ୍ୟ ଅର୍ଜ୍ଜନ କରିଅଛୁ । ବହୁ ମୂଲ୍ୟ ରତ୍ନ ସୁନା ଗୋଟିଏ ତୋଳାର ମୂଲ୍ୟ ପାଞ୍ଚ ହଜାର ଟଙ୍କା । ତାକୁ ପାଞ୍ଚ ଟଙ୍କାରେ ବିକ୍ରି କରି ଗୌରବ ଅନୁଭବ କରିବା ଠିକ ହେବ କିପରି ।

ପୃଥିବୀ ମଧ୍ୟରେ ଆଜି ଆମେରିକା ଉନ୍ନତ ଦେଶ ବୋଲି ପ୍ରସିଦ୍ଧି ଲାଭ କରିଛି । ତଥାପି ଆମ ଭାରତ ବର୍ଷର ସଂସ୍କୃତି କଳା, ଧର୍ମ, ନୀତି ନିୟମ ଶିକ୍ଷା କରିବା ପାଇଁ ସେ ଉତ୍କଣ୍ଠିତ । ୧୯୮୭ ଇ। ଆମେରିକା ଫିଲାଡେଲ୍ଫିଆ ପ୍ରଦର୍ଶନୀ ଠାରେ ମୁଁ ୫ ମାସ ରହି ମୋର ହସ୍ତ ତନ୍ତ ଶିଳ୍ପ କଳା ପ୍ରଦର୍ଶିତ କରିଥିଲି । ଏତେ ତାଙ୍କର ଶ୍ରଦ୍ଧା ଓ ଅନୁରାଗ ଯେ ମୋର ବୁଣା ମଜାକୁ କିଣିନେବା ପାଇଁ ବହୁତ ଆଗ୍ରହ ପ୍ରକାଶ କରୁଥାନ୍ତି । ଆମ ସେକ୍ରେଟେରୀଙ୍କୁ ପରାମର୍ଶ କରୁଥାନ୍ତି । ସେକ୍ରେଟେରୀ ମଧ୍ୟ ମୋତେ କହିଲେ ବିକ୍ରି କରିବା ପାଇଁ । ଦଶ ହଜାର ଟଙ୍କାର ତାଂକ ଦେଶର ଡଲାର ଦେଇଥାନ୍ତେ । ମୁଁ ସମ୍ପୂର୍ଣ୍ଣ ଭାବରେ ମନା କରିଦେଲି । ମୋର କର୍ମ, ଧର୍ମ, ଦେବତା, ବିଶ୍ୱକର୍ମା ହେଉଛନ୍ତି ଏ ମଜା । ଏଥିରୁ କଣିକାଟେ ମଧ୍ୟ ବିକ୍ରି କରିବି ନାହିଁ ବୋଲି କହିଲି ।

ସେକ୍ରେଟେରୀଙ୍କ ମତ ଥିଲା ବିକ୍ରି କରିଦେଲେ ଭଲ ହୁଅନ୍ତା, ତାର କାରଣ ଆଣିବା ଉଡ଼ାନ ଲଗେଜ ୧୨ ହଜାର ଟଙ୍କା ଲାଗିଯିବ ।

ଆମ ଭାରତବର୍ଷର ପ୍ରଭୁପାଦ ବ୍ରହ୍ମର୍ଷି ଆମେରିକାରେ ଇସ୍କନ ସଂସ୍ଥା ଗଠନ କରି ବଡ଼ ବଡ଼ ମନ୍ଦିର କରିଛନ୍ତି । ସେଠାରେ ଆମ ଓଡ଼ିଶାର ଦାରୁ ବ୍ରହ୍ମ ମୂର୍ତ୍ତି, ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ତଥା ରାଧା କୃଷ୍ଣଙ୍କ ମୂର୍ତ୍ତି

ଏବଂ ସେଠାରେ ଚୈତନ୍ୟଙ୍କର ମୂର୍ତ୍ତି ସ୍ଥାପନ କରି ପୂଜା ଆରାଧନା କରନ୍ତି । ଶ୍ୱେତାଙ୍ଗ ଲୋକମାନେ ବୈଷ୍ଣବ ଧର୍ମରେ ଦୀକ୍ଷିତ । ଯଜ୍ଞୋପବୀତ ଧାରଣ କରି ଲଣ୍ଡା ମୁଣ୍ଡ ହୋଇ ଚନ୍ଦନ ବୋଳିତ ଶରୀରରେ ଗେରୁଆ ବସ୍ତ୍ର ପରିଧାନ କରି ପରମାତ୍ମା ଚିନ୍ତନରେ ବ୍ୟସ୍ତ ହୋଇଛନ୍ତି । ଶ୍ୱେତାଙ୍ଗିନୀ ନାରୀମାନେ ଚନ୍ଦନ ଟିକା ତୁଳସୀ କଣ୍ଠି ଆଭୂଷଣ ହୋଇ ସମ୍ବଲପୁରୀ ଶାଢ଼ୀ ପରିଧାନ କରିଥାନ୍ତି । ଆବାଳ ବୃଦ୍ଧ ବନିତା ଅମର ହୃଦ ସ୍ୱର୍ଣ୍ଣ ସୂତ୍ର ପାଠ କରୁଛନ୍ତି । ଭାରତୀୟ ଶିକ୍ଷକଙ୍କ ଠାରୁ ଶିକ୍ଷା ଲାଭ କରୁଛନ୍ତି । ଆମେରିକାର ଲୋକମାନେ ଭାରତକୁ ଆସି ଓଡ଼ିଶା ସମ୍ବଲପୁର ବରପାଲିକୁ ଆସି ମୋ ହାତରେ ମଧ୍ୟ ପାଦ ପକାଇ ଥାନ୍ତି । ସଂସ୍କୃତି ଓ ଶିଳ୍ପ କଥା ବିଷୟରେ ତଥ୍ୟ ସଂଗ୍ରହ କରି ନେଉଛନ୍ତି ।

ଆମେ ମଧ୍ୟ ତାଙ୍କଠାରୁ ଶିକ୍ଷା କରିବାକୁ ପଡ଼ିବ । କଲୁ ବଢ଼ଛନ୍ତି ସଦ୍ ଶିକ୍ଷା ଆବଶ୍ୟକ । ନୀତି ଶାସ୍ତ୍ରରେ ଅଛି ।

ବିଷାଦପ୍ୟମୃତଂ ଗ୍ରାହ୍ୟମ୍ ଅମେଧ୍ୟାଦପି କାଞ୍ଚନଂ
ନୀଚ୍ଚମ ପ୍ରଭମାଂ ବିଦ୍ୟାଂ ସ୍ତ୍ରୀ ରତ୍ନଂ ଦୁଷ୍କୁଳାଦପି ।

ଡଂ ଜଂ ଦେଶର ବୈଜ୍ଞାନିକ କାରୁକାର୍ଯ୍ୟ ଯଥା ଅପାର ବାରିଧି ତାଙ୍କର । ଆମ ଦେଶର କୃଷି ଶିଳ୍ପ ଭଳି । ସମୁଦ୍ର ବକ୍ଷରୁ ରତ୍ନ ସଂଗ୍ରହ ତାଙ୍କର ସର୍ବ ଶ୍ରେଷ୍ଠ କର୍ମ । ରତ୍ନଗର୍ଭ ସାଗର ମଧ୍ୟରେ ରତ୍ନାକର ପୁତ୍ର । ତାଙ୍କର ରତ୍ନରୁ ଧନ ରତ୍ନ ପ୍ରାଚୁର୍ଯ୍ୟ ମଧ୍ୟରେ ଐଶ୍ୱର୍ଯ୍ୟ ସମ୍ପତ୍ତି ପରିପୂର୍ଣ୍ଣ । ସେ ଦେଶର ମାନବକୁ ଦେଖିଲେ ତେଜୋମୟ, ଗୌରବର୍ଣ୍ଣ ହୃଷ୍ଟ ପୁଷ୍ଟ । ତାଙ୍କ ସର୍ବାଙ୍ଗରେ ଅସ୍ଥି ଶିରା ର ଚିହ୍ନ ଦେଖାଯାଏ ନାହିଁ । ଗୋଲ ମୁହଁ, ପାଦ ଠାରୁ ଶିର ପର୍ଯ୍ୟନ୍ତ ଶରୀର ପୁଷ୍ଟ । ଆବାଳ ବୃଦ୍ଧ ବନିତା ସମସ୍ତଙ୍କ ଦେହ କାନ୍ତିମୟ । ମୁଁ ପ୍ରଥମେ ଦେଖିଲି ଯେ ନାରୀ କି ପୁରୁଷ, ଯୁବକ କି ବୃଦ୍ଧ ଜାଣିପାରିଲି ନାହିଁ । ତାଂକର ଅଦ୍ଭୁତ ଜ୍ଞାନ ଅଛି । ତାଂକର କଣ୍ଠସ୍ୱର ବାର୍ତ୍ତାଳାପ ଓ ଭାଷା ଅତ୍ୟନ୍ତ କୋମଳ ଓ ମଧୁର ।

ଆମ ଗୁରୁଜୀଙ୍କୁ ଦେଖି ତାଂକର ମନଭାବ ପ୍ରକାଶ ସଙ୍ଗେ ସଙ୍ଗେ ଅଳ୍ପ ନତ ମସ୍ତକ ହୋଇ ଥେଂକଉ ଥେଂକଉ ଉଚ୍ଚାରଣ କରନ୍ତି । ସେମାନେ ଏତେ ବୈଭବଶାଳୀ ହୋଇ ମଧ୍ୟ ତାଂକର ମନସ୍କାମନା ପୂରଣ

ହୋଇନାହିଁ । ଆମ ଭାରତୀୟ ସଂସ୍କୃତି ଓ ଶିଳ୍ପ କଳାର ମହତ୍ୱକୁ ଅନୁଧ୍ୟାନ କରି ଚମତ୍କୃତ ହେଉଛନ୍ତି । ସାମାନ୍ୟ ଟିକିଏ ଦେଖିଦେଇ ମାତ୍ର ଭୁଲିଯିବେ ନାହିଁ । ଗଭୀର ଦୃଷ୍ଟିପାତ କରନ୍ତି । ପ୍ରକୃତରେ ସେମାନେ ଭାରତୀୟ ସଂସ୍କୃତି ଶିଳ୍ପ କଳା ଅନୁକରଣ କରିବା ପାଇଁ ବ୍ୟାକୁଳ ।

ଆମେ ସାଧାରଣତଃ ଶୁଣ୍ଣା କରିବା, ପରମେଶ୍ୱରଙ୍କର ଅପାର କରୁଣାରୁ କର୍ମଭୂମି ଭାରତବର୍ଷରେ ଜନ୍ମ ଲଭିଛୁଁ । ପ୍ରମାଣ ମିଳେ, ପୃଥିବୀର ସମସ୍ତ ଦେଶରୁ ଶ୍ରେଷ୍ଠ ଆମର ପ୍ରାଚୀନ ପରମ୍ପରା, ସଂସ୍କୃତି ଓ ଶିଳ୍ପକଳା ।

ଆମର୍ ଚଳିଚଳନ୍ ରୀତି, ନୀତି, ଭକ୍ତ ଭକ୍ତି, ପୂଜି ପର୍ବ ମାଏନ୍ ଦାଏନ୍ ସବୁକେ ପାସ୍ରି ଯିମା ଆଉର୍ ସେ ବିଦେଶିଆ ଢଙ୍ଗରଙ୍ଗ ଶିଖ୍ ବାରଟା, ଅଗ୍ କେ ଆମର୍ ଯୋ ନାତି, ଦେଶ୍ ଜାତିର୍ କାଏଁ ଗତିକେ ଯିବେ ଯେ ଭଲ୍ ନୀ ଲାଗୁଛେ ।

ଦିନ୍ ଛେ ଦେଖି ଚଟିଆ ପିନା "ମରାଳ ଗମନୀ" ଭରମି ବଏଲା । ଚଲି ତ ନାଇ ଜାନ୍ଲା । ତାର୍ ଚଏଲ୍ ବି ପାସ୍ରି ଗଲା । ଟାଲି ଭେଗ୍ଲା ।

ଶାସ୍ତ୍ରର୍ ଥିଁ ଅଛେ —

ନିର୍ବାପ ଦୀପେ କିମ ତୈଳ ଯୋଗଂ
ସ୍ରୋତ ଗତେ ଚ କିମ ସେତୁ ବନ୍ଧ ।
ଚୌର ଗତେ ବା କିମ ସାବଧାନମ୍
ବୟୋ ଗତେ ତ କିମ ବନୀତା ବିଳାସମ୍ ।

ଯୋ ହୁବା ଭଏ ବହେଲ୍

ମନ୍ ଚିତ୍ କେ ଠିକ୍ ରଖିକରି ଚଲ୍ଲେ ଭଲ୍ ହେଟା ବଲୁଛେଁ, ପଛକେ ଆଉର୍ କାଣୋଇଷା । ଏତକି ଲେଖିପାରିଲି । ଭୁଲ୍ ଭଟକେ ମାଫ୍ କର୍ବେ ବଲି ଆଶା କରିଛେଁ । ଦୁଇ ହାତ୍ କେ ଯୋଡ଼କରି ମୁଣ୍ଡକେ ତଳ୍ କରି ରହୁଛେଁ । ଜୁହାର୍ ।

ଜୟ ଉତ୍କଳ ଜନନୀ

ଜାହାଁ ସୁମତି ତହାଁ ସମ୍ପତ୍ତି ନାନା,
ଜାହାଁ କୁମତୀ ତହାଁ ବିପତ୍ତି ନିଦାନା ।

( ତୁଳସୀ ଦାସ )

]

# ଶିଳ୍ପୀଙ୍କ ବିଷୟରେ ପଦେ —



ସମ୍ବଲପୁରୀ ଶାଢ଼ୀ ଆଜି ଦେଶ ବିଦେଶରେ ସର୍ବତ୍ର ପରିଚିତ ଏହି ସମ୍ବଲପୁରୀ ଶାଢ଼ୀର ଲୋକପ୍ରିୟତା ମୂଳରେ ରହିଛି ଏହାର ବାନ୍ଧ କାମ ଓ ବୟନ ଶିଳ୍ପ କଳା ଚତୁରୀ । ପ୍ରକୃତରେ ଏହି ବାନ୍ଧକଳାହିଁ ସମ୍ବଲପୁରୀ ଶାଢ଼ୀ ପାଟମଠାକୁ ଆଜି ଦେଶ ବିଦେଶରେ ପରିଚିତ ଲାଭ କରଇ ପାରିଛି । ଏହିପରି ବାନ୍ଧ କଳାର ଜଣେ ଅଭିଜ୍ଞ ଓ ଉଚ୍ଚ କୋଟିର ଶିଳ୍ପୀ ହେଉଛନ୍ତି ଶ୍ରୀଯୁକ୍ତ କୁଞ୍ଜବିହାରୀ ମେହେର, ଯିଏକି ନିକଟ ଅତୀତରେ ଆମେରିକା ଫିଲାଡେଲଫିଆ ଓ ହଂ କଂ ପ୍ରଦର୍ଶନୀ ଠାରେ ନିଜର ବାନ୍ଧ କାମ ଓ ବୟନ ଶିଳ୍ପର କଳା ନୈପୁଣ୍ୟ ପ୍ରଦର୍ଶନ କରି ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି ।

୧୯୨୮ ମସିହା ନଭେମ୍ବର ମାସ ୧୧ ତାରିଖ ଦିନ ବରଗଡ ଜିଲ୍ଲାର ବୁଡାପାଲି ଗ୍ରାମରେ ଲେଖକ ଶିଳ୍ପୀ ଶ୍ରୀଯୁକ୍ତ କୁଞ୍ଜ ବିହାରୀ ମେହେରଙ୍କ ଜନ୍ମ । ସେ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇମଧ୍ୟ ନିଜର କୌଳିକ ବୃତ୍ତି ବାନ୍ଧକାମ ଓ ବୟନ ଶିଳ୍ପରେ ନିଜକୁ ନିୟୋଜିତ କରି ବୟନ ଶିଳ୍ପର ଉତ୍ତରୋତ୍ତର ଉନ୍ନତି ପାଇଁ ନୂତନ କଳା ଚତୁରୀର ପ୍ରୟୋଗ କରି ବୟନ ଶିଳ୍ପର ମର୍ଯ୍ୟାଦା ବୃଦ୍ଧି କରିପାରିଛନ୍ତି ।

ଶିଳ୍ପୀ ନିଜ ବାଲ୍ୟାବସ୍ଥା ଠାରୁ ଆଜି ପର୍ଯ୍ୟନ୍ତ ନିଷ୍ଠାର ସହ ବାନ୍ଧ ଓ ବୟନ ଶିଳ୍ପର ନୂତନ ନୂତନ କଳାକୃତିର ଉଦ୍ଭାବନ ପାଇଁ ଅହରହ ଚେଷ୍ଟିତ । ତାଙ୍କ ମତରେ, ମନୁଷ୍ୟ ଜନ୍ମ ମାତ୍ରକେ ଖାଦ୍ୟ ବସ୍ତ୍ର ଓ ବାସ ନିତାନ୍ତ ଦରକାର କରେ କିନ୍ତୁ ଖାଦ୍ୟ ଓ ବାସସ୍ଥାନ ଅପେକ୍ଷା ବସ୍ତ୍ରହିଁ ତାର ସର୍ବ ପ୍ରଥମ ପ୍ରୟୋଜନ । ଏଣୁ ଏହିପରି ଏକ ଅମୂଲ୍ୟ ବସ୍ତ୍ର ବୟନକୁ ନିଜର କୌଳିକ ବୃତ୍ତି ଭାବରେ ଗ୍ରହଣ କରିଥିବାରୁ ସେ ନିଜକୁ ଧନ୍ୟ ମନେ କରନ୍ତି ।

— ମୁଦ୍ରକ —